ଓଡ଼ିଶା ଶିକ୍ଷାବିଭାଗୀୟ ଡିରେକ୍ଟର ମହୋଦୟଙ୍କ ତା ୨୦-୩-୫୩ ର
୧ନମ୍ବର ନୋଟିସରେ ୪ର୍ଥ ଶ୍ରେଣୀପାଇଁ ପାଠ୍ୟପୁସ୍ତକରୂପେ ନିର୍ବାଚିତ

# ପାଠମାଳା

## ତୃତୀୟ ଭାଗ

( ଚତୁର୍ଥ ଶ୍ରେଣୀ ନିମିତ୍ତ )



ଲେଖକ
ପଣ୍ଡିତ ଗୋଦାବରୀଶ ମିଶ୍ର ଏମ୍. ଏ., ବି. ଟି.

ସଂଶୋଧିତ ସଂସ୍କରଣ

ପ୍ରକାଶକ
ଶ୍ରୀ ଉମାଚରଣ ମହାନ୍ତି
ପ୍ରୋପ୍ରାଇଟର, କଟକ ପବ୍ଲିଶିଂ ହାଉସ୍
ନୟାସଡ଼କ, ପୋଃ ଅଃ ଗୃହଦମାଟରୀକ, କଟକ
୧୯୫୩

ମୂଲ୍ୟ ଟ ୦ ।୵ — ଛଅ ଅଣା ମାତ୍ର
ଅତିରିକ୍ତ ତିନି ଅଣା

# ସୂଚୀପତ୍ର

ବିଷୟ ପୃଷ୍ଠା


| | |
|---|---|
| ୧ । ଘେନ ପୁଷ୍ପାଞ୍ଜଳି (ପଦ୍ୟ) ... | ୧ |
| ୨ । ବେଙ୍ଗରାଜା ... | ୩ |
| ୩ । ମାଉଡ଼ କଞ୍ଚଣି ନ କରେ | ୮ |
| ୪ । କପର ଚନ୍ଦ୍ରାଗଲେ | ୧୧ |
| ୫ । ଜୁଳୁଜୁଳା ପୋକ ... | ୧୫ |
| ୬ । କିଅ ମୋର ମୁଣ୍ଡବଳି(ପଦ୍ୟ)... | ୧୮ |
| ୭ । ତୁରସ୍କ ପିଲାଙ୍କ ଗୃହଲ୍‌ଚଳନ ... | ୨୪ |
| ୮ । ମହରମ ପର୍ବ ... | ୨୮ |
| ୯ । ନୋବେଲ୍ ପୁରସ୍କାର ... | ୩୨ |
| ୧୦ । ଅଳସ୍ୟ ଯେ କରେ (ପଦ୍ୟ)... ... | ୩୬ |
| ୧୧ । ରେଷ୍ଟୁର୍ଡ ... ... | ୩୮ |
| ୧୨ । ଯମ ଓ ମନୁଷ୍ୟ ... | ୪୨ |
| ୧୩ । ପଞ୍ଚକନ୍ୟା ... | ୪୬ |
| ୧୪ । କାହାକୁ ଭିକ୍ଷା ମାଗିବ ? (ପଦ୍ୟ) ... | ୫୫ |
| ୧୫ । ପାଣିରେ ରହେ ମାଛ ନୁହେଁ ... ... | ୫୭ |
| ୧୬ । କୃଷି ଓ କୃଷକର ଅସନ ... | ୬୨ |
| ୧୭ । ଭୁବନେଶ୍ବର ... ... | ୬୫ |
| ୧୮ । ରାଜ ସିଂହାସନ ନା ଜୀବେଦସ୍ଥା ? (ପଦ୍ୟ) ... | ୭୦ |
| ୧୯ । ମରୁହ୍ରଦ ... | ୭୩ |

ବିଷୟ　　　　　　　　　　　　　　　　　　　　　　　ପୃଷ୍ଠା

୨୦ । ୧୯୩୪ ମସିହା ଭୂମିକମ୍ପ ... ୭୬
୨୧ । ରଜା କପର ଶିକ୍ଷା ପାଇଲେ ... ୭୯
୨୨ । ଭାରତ ଓ ପାକିସ୍ଥାନ (ପଦ୍ୟ)... ୮୩
୨୩ । ନିଜ ସ୍ତ୍ରୀକୁ ସ୍ୱାମୀ ଚିହ୍ନିଲେ ନାହିଁ ... ୮୫
୨୪ । ବ୍ରାହ୍ମଣ ଚଣ୍ଡାଳ ସମାନ ... ... ୯୦
୨୫ । ବସ୍ତ୍ର ... ୯୩
୨୬ । ଜର୍ମାନୀ ରାଜ୍ୟର ଗ୍ରାମ ... ୯୮
୨୭ । ଶରତ୍ ସନ୍ଧ୍ୟା (ପଦ୍ୟ) ୧୦୨

# ପାଠ ମାଳା

## ତୃତୀୟ ଭାଗ

ଚୟନ ପୁଷ୍ପାଞ୍ଜଳି



ଯେତେ ଦେଶ ଜାତି ଅଛନ୍ତି ମହୀତଳେ,
ସିନ୍ଧୁ ଶୈଳ ଯାର ସୃଜନ୍ତି ସୀମା;
ଭାଷା ସୁବେଶ କାର ଅସିନ୍ତି ଏକତା,
ଲକ୍ଷ୍ୟ ବଳେ ଅଉ କେ ହୁଏ ଚହ୍ନା ।

ଦେଶରେ ଗୋଟିଏ ଜାତୀୟ ପତାକା
ଯେତେ ଜାତି ସେତେ ପତାକା ଜାଣି;
ପତାକା ତ ସ୍ଥୁଳ ଜନାର ପଦାର୍ଥ,
ମାତ୍ର ପ୍ରକୃତ ସେ ଜାତର ପ୍ରାଣ ।
ସମ୍ପଦେ ଅପଦେ ସନ୍ଧି ବା ସମରେ
ଜାତୀୟ ପତାକା ଲୁଚାଇ ନଦେ;
ପଗ୍ଭକ୍ରମେ ସେହୁ ଡକାଇ ବଳେ,
ଜୟବେଳେ ଉଡ଼ ଉଠାଇ ଗର୍ବେ ।
କେତେ କେତେ ଜାତ ଭାଙ୍ଗିଛୁ ଗଢ଼ିଛୁ
ସେ ପତାକା ଏହି ଧରଣୀ ବୁକେ;
ତେଣୁ ସୁତ ତାର କୋଟି ନରନାରୀ
ହରଷେ ସତତ ରହନ୍ତି ମୁଖେ ।
ଆମ ସୁବିଶାଳ ଜାତ ଶତବର୍ଷ
ବିଦେଶୀ ପେଷଣେ ହୋଇଲ ଚୂର୍ଣ୍ଣ;
କନୁ ତୁ ତିରଙ୍ଗ ଜାତୀୟ ପତାକା
ସ୍ୱାଧୀନତା ବାଞ୍ଛା କଲୁ ତା ପୂର୍ଣ୍ଣ ।
ତୋହ ଲାଗି କେତେ ଶତ ଜାତ ବୀର
ଉତ୍ସର୍ଗ ଜୀବନ କଲେ ହସି;
କେତେ ତ ଜାତର ଯୁବକ ଦେଖିଲେ
ଭବୀ ସୁଖସ୍ୱପ୍ନ ତୋ କୋଳେ ବସି ।
ତହୁଁ ସିନା ଆଜ ସ୍ୱାଧୀନ ଭାରତ,
ସ୍ୱାଧୀନ ତେତିଶ କୋଟି ସନ୍ତାନ;
ତୋଠାରୁ କ ଅଛି ଆମ ପୂଜା ଯୋଗ୍ୟ ?
ଘେନ, ପୁଷ୍ପାଞ୍ଜଳି କରୁଛୁଁ ଦାନ

## ପ୍ରଶ୍ନ

୧ । ଦେଶର ସୀମା ଓ ଜାତିର ଏକତା କପରି ହୁଏ ?

୨ । ଜାତୀୟ ପତାକାର କାର୍ଯ୍ୟ କଣ ?

୩ । ତିରଙ୍ଗା ପତାକା ଭାରତରେ କଣ କରନ୍ତି ?

୪ । ନିମ୍ନଲିଖିତ ଶବ୍ଦମାନଙ୍କ ପରିବର୍ତ୍ତେ ଏ ପାଠରେ କି କି ଶବ୍ଦ ବ୍ୟବହୃତ ହୋଇଛି :—ସମୁଦ୍ର, ପର୍ବତ, ଯୁଦ୍ଧ, ଆକାଶ, ଧ୍ୱଂସ, ପୃଥିବୀ, ଅତି ବଡ଼, ଇଚ୍ଛା, ଅଣ୍ଡୁଲାଏ, ଫୁଲ, ପୁଅଝିଅ ।

୫ । ନିଦ୍ରା, ପଦାର୍ଥ, ପ୍ରକୃତି, ଜୟ, ପରାଜୟ, ସ୍ତୁତି, ଉତ୍ସର୍ଗ, ଯୋଗ୍ୟ—ଲଗାଇ ବାକ୍ୟ ରଚନା କର ।

---

## ବେଙ୍ଗ ରାଜା

ଅତି ପ୍ରାଚୀନ କାଳରେ ଜଣେ ରାଜାଙ୍କର ଗୋଟିଏ ସୁନ୍ଦରୀ କନ୍ୟା ଥିଲା । ସେ ପ୍ରତ୍ୟହ ଅପରାହ୍ଣରେ ରାଜପ୍ରାସାଦରୁ ନିକଟବର୍ତ୍ତୀ ଏକ ଅରଣ୍ୟକୁ ବୁଲିବାକୁ ଯାଏ ଏବଂ ସନ୍ଧ୍ୟା ପୂର୍ବରୁ ଫେରିଆସେ । କିନ୍ତୁ ଦିନେ ସେ ବୁଲି ବୁଲି ଅରଣ୍ୟ ପଥରେ ବହୁଦୂର ଚାଲିଗଲା । ଅନେକ ସମୟ ପରେ ସେ ଏକ ପୋଖରୀ କୂଳରେ ପହଞ୍ଚି ନିଜ ସୁନା ପେଣ୍ଡୁଟି ଗଡ଼ାଇ ଖେଳି ବସିଲା । ସେହି ଖେଳରେ ତାର ଅତିଶୟ ଉଲ୍ଲାସ ଜନ୍ମିଲା । ଆନନ୍ଦରେ ସେ ଯେତେ ହସିଲା ତା ପ୍ରତିଧ୍ୱନି ସାରା ବନଦେଶରେ ଖେଳିଗଲା । ତହୁଁ ସେ ମନକୁ ମନ କହିଲା, "ଏ ସଂସାରରେ ମୋ ପରି ସୁଖୀ ଆଉ କିଏ ଅଛି ।"

କିନ୍ତୁ ସେହି ମୁହୂର୍ତ୍ତରେ ସୁନା ପେଣ୍ଡୁଟି ଗଡ଼ି ଗଡ଼ି ଯାଇ ପୋଖରୀ ଭିତରେ ପଡ଼ି ଅଦୃଶ୍ୟ ହୋଇଗଲା । ରାଜକନ୍ୟା କୂଳରେ ବସି ଦୁଃଖରେ କାନ୍ଦିବାରେ ଲାଗିଲା । କେତେକ ସମୟ ପରେ

ପାଣି ଭିତରୁ ତାଙ୍କୁ ଗୋଟିଏ ସ୍ୱର ଶୁଭିଲା; କେହି ଜଣେ ପଚାରିଲା, "ଅଚ୍ଛା, ଜେମା, କହ ଦେଖି, ତୁମେ କାହିଁକି କାନ୍ଦୁଛ ?" ରାଜକନ୍ୟା ଚମକି ପଡ଼ି ନିରୀକ୍ଷଣ କରି ଦେଖିଲା ଯେ, ଗୋଟାଏ ବେଙ୍ଗ ତାଙ୍କୁ ସେ ପ୍ରଶ୍ନ ପଚାରୁଛି । କୁତ୍ସିତ, କଦର୍ଯ୍ୟ ବେଙ୍ଗଟାକୁ ଦେଖି ତା ମନରେ ଘୃଣା ଜନ୍ମିଲେ ସୁଦ୍ଧା, ସେ ଦୁଃଖର କାରଣ ପ୍ରକାଶ କଲା । ବେଙ୍ଗ ତାହା ଶୁଣି କହିଲା, "ଓଃ, ଏଇ କଥାକୁ ଏତେ କାନ୍ଦ ! ଟିକିଏ ଅପେକ୍ଷା କର, ମୁଁ ତୁମ ସୁନାପେଣ୍ଡୁ ଆଣିଦେବି । ମାତ୍ର ତୁମେ ମୋତେ କଣ ଦେଇ ଋଣ ସୁଝିବ, କହିଲ ଦେଖି ।"

ପେଣ୍ଡୁ ମିଳିଯିବା ଆଶାରେ ରାଜକନ୍ୟାର ଆନନ୍ଦର ସୀମା ରହିଲା ନାହିଁ । ସେ ଉତ୍ତର ଦେଲା, "ତୁ ଯାହା ମାଗିବୁ, ଦେବି— ହୀରା, ନୀଳା, ମୋତି, ମାଣିକ୍ୟ ଯାହା ଲୋଡ଼ିବୁ । ବେଙ୍ଗ କହିଲା, "ମୋର ଏଗୁଡ଼ାକ କଣ ହବ ମ ? ମୁଁ କଣ ମଣିଷ ହୋଇଛି ? ଶୁଣ, ମୋର କଣ ଦରକାର । ମୋତେ ନେଇ ତୁମେ ଉଆସରେ ନିଜ ପାଖେ ରଖିବ, ମୋତେ ତୁମ ସୁନାଥାଳରେ ତୁମର ସାଙ୍ଗେ ବସାଇ ଖୁଆଇବ । ଏଥିରେ କେବେ ତ୍ରୁଟି କରିବ ନାହିଁ ବୋଲି ଶପଥ କର, ତେବେ ମୁଁ ଏଇ ସାଥେ ସାଥେ ତୁମ ପେଣ୍ଡୁଟି ଆଣିଦେବି ।" ରାଜକନ୍ୟା ପେଣ୍ଡୁଟି ପାଇବା ନିମନ୍ତେ ନିତାନ୍ତ ବ୍ୟାକୁଳ ହୋଇ ପଡ଼ିଥିଲା; ତତ୍‌କ୍ଷଣାତ୍ ଶପଥ କରି କହିଲା, "ହଁ, ମୁଁ ସବୁ ଅକ୍ଷରେ ଅକ୍ଷରେ ପାଳନ କରିବି ।"

ବେଙ୍ଗ ନିର୍ଭର ପ୍ରତିଶ୍ରୁତି ପାଇ ପାଣି ଭିତରେ ଟୁବ୍‌କିନା ବୁଡ଼ିଗଲା ଏବଂ କ୍ଷଣକ ମଧ୍ୟରେ ସୁନାପେଣ୍ଡୁଟି ଧରି ଉଠି ଆସିଲା । ରାଜକନ୍ୟା ଆନନ୍ଦରେ କରତାଳି ଦେଇ, ହାତ ବଢ଼ାଇ ପେଣ୍ଡୁଟି ଧରିନେଲା ଏବଂ ଏକ ନିଃଶ୍ୱାସରେ ଧାଇଁବାରେ ଲାଗିଲା । ସେ ଯେଉଁ ପ୍ରତିଜ୍ଞା କରିଥିଲା, ତାହା ତାର ବିସ୍ମରଣ ହୋଇଗଲା । ସନ୍ଧ୍ୟା

ପୁର୍ବରୁ ସେ ବିଷୟସବୁ ଫେରିବାକୁ ବ୍ୟାକୁଳ ହୋଇ ପଡ଼ିଥିଲ । ବେଙ୍ଗ ପଛରୁ ଡାକି କହିଲ, "ଜେମା, ଏ କଣ ? ମତେ କଣ ଠକିଦେଲ ? ତୁମର ଏହି ମୁହୂର୍ତ୍ତିକ ଆଗ ଶପଥ କଣ ଆଜି ମନେ ନାହିଁ ? ଏତେ ବେଗରେ ଦୌଡ଼ ନା, ମତେ ସାଙ୍ଗରେ ନିଅ ।" କିନ୍ତୁ ରାଜକନ୍ୟା ସେଥିରେ କର୍ଣ୍ଣପାତ କଲେ ନାହିଁ, ଚାଲିଗଲେ ।

ପରଦିନ ରାଜକନ୍ୟା ପିତାମାତାଙ୍କ ସହିତ ଭୋଜନାଳୟରେ ବସିଛନ୍ତି, କବାଟରେ କାହାର ଠିପ ଶବ୍ଦ ଶୁଭିଲ । ସେ ଶବ୍ଦ ପ୍ରତି କେହି ବିଶେଷ ଲକ୍ଷ୍ୟ ଦେଲେ ନାହିଁ । ତହୁଁ ବାହାରୁ ଗୀତ ସ୍ୱର ଶୁଣାଗଲ :—

"ଫିଟାଅ ଦୁଆର, ହେ ରାଜଦୁଲାଲି,
କାଲିର ଶପଥ ସ୍ମର;
ମୁଁ ପର ତୁମର ଉପକାରୀ ବନ୍ଧୁ,
ନିଅ ମୋତେ ପାଶେ କରି ।"

ରାଜକନ୍ୟା ସ୍ୱର ବାରି ନେଇ ଭୟରେ ବିହ୍ୱଳ ହୋଇପଡ଼ିଲେ ଏବଂ ଦ୍ୱାର ଫିଟାଇଲେ ନାହିଁ । ମାତ୍ର ରାଜା ଓ ରାଣୀ ଯାଇ ଦ୍ୱାର ଫିଟାଇ ଦେଲେ । ତହୁଁ ଗୋଟାଏ ବେଙ୍ଗ ଖପ୍‌କିନା ଘର ଭିତରକୁ ଡେଇଁ ପଡ଼ିଲ ଏବଂ ସଙ୍ଗେ ସଙ୍ଗେ ରାଜାଙ୍କ ଆଗେ ଅଭିଯୋଗ କରି ବସିଲ । ନ୍ୟାୟବାନ୍ ରାଜା; ସବୁ ଶୁଣିସାରି କହିଲେ, "ଏ କିପରି କଥା ? ପ୍ରତିଜ୍ଞା ରକ୍ଷା କରିବାକୁ ହେବ । ମୋ ଝିଅ ଅନ୍ୟାୟ କଲେ ମୁଁ ସହିବି ନାହିଁ ।"

ଉପାୟାନ୍ତର ନ ଦେଖି ରାଜକନ୍ୟା କୁଣ୍ଠିତ ଚିତ୍ତରେ ବେଙ୍ଗଟାକୁ ସଙ୍ଗରେ ବସାଇ ନିଜ ସୁନା ଥାଳିରେ ଖୁଆଇଲେ । ଖାଇସାରି ବେଙ୍ଗ କହିଲ, "ମୋର ଭାରି ପଥଶ୍ରମ ହୋଇଛି, ଜେମା । ମୋତେ ଶେଯ ଦେଖେଇ ଦିଅ, ମୁଁ ଯାଇ ଶୋଇ ପଡ଼େ ।" ରାଜକନ୍ୟା ମୁହଁ ମୋଡ଼ି

ଦେଇ ଗୁଲ୍‌ପିବାକୁ ବସିଲା । ମାତ୍ର ରାଜା କହିଲେ, "ପ୍ରତିଶ୍ରୁତ ନ ରଖିଲେ ଚଳିବ ନାହିଁ, ମା; ତୋତେ ଏହାକୁ ନେଇ ନିଜ ପଲଙ୍କ ବିଛଣାରେ ଶୁଆଇବାକୁ ହେବ । ଏଥିରେ ଅନ୍ୟଥା କର ନା ।"

ବେଙ୍ଗ କ୍ଳାନ୍ତ ଶ୍ରାନ୍ତ ହୋଇ ପଡ଼ିଥିଲା, ଶେଯରେ ଚଢ଼ି ପଡ଼ି ଗାଢ଼ ନିଦ୍ରାରେ ଶୋଇଗଲା । କିନ୍ତୁ ରାଜକନ୍ୟାର ଆଖି ପଲକ



ପଡ଼ିଲା ନାହିଁ, ସେ ସାରା ରାତି ଅନିଦ୍ରାରେ କଟାଇଲା । କେବଳ ପାହାନ୍ତି ପହରର ଶୀତଳ ପବନରେ ଶେଷକୁ ତା ଆଖି କ୍ଷଣକ ପାଇଁ

ଲାଗିଗଲା । କିନ୍ତୁ ପରକ୍ଷଣରେ ତା ନିଦ ଗୁଡ଼ିଁ କରି ଭାଙ୍ଗିଗଲା । ସେ ଦେଖିଲା, ଜଣେ ସୁନ୍ଦର ଯୁବକ ତା ସମ୍ମୁଖରେ ଦଣ୍ଡାୟମାନ । ରାଜକନ୍ୟା ଚିତ୍କାର କରି ଉଠିବାକୁ ବସିଲାବେଳେ ଯୁବକ କହିଲା, “ଡର ନାହିଁ, ଜେମା; ମୁଁ ଜଣେ ରାଜପୁତ୍ର, ଦେବକୁଠରେ ବେଙ୍ଗ ପାଲଟି ଯାଇଥିଲି । ମୋ ଅଭିଶାପ କଟିଯାଇଛି । ମୋତେ ଯେଉଁ ଅପ୍ସରୀ ଅଭିଶାପ ଦେଇଥିଲେ, ସେ କହିଥିଲେ ଯେ କୌଣସି ରାଜକନ୍ୟାର ମୁଁ ଅତିଥି ହୋଇ ପାରିଲେ, ସେହି ଅଭିଶାପ କଟିଯିବ ।”

ସେଦିନ ସମଗ୍ର ରାଜପ୍ରାସାଦରେ ଆନନ୍ଦ ଉତ୍ସବ ଲାଗିଲା । ରାଜା ନିଜ କନ୍ୟାଟି ନିମନ୍ତେ ବରପାତ୍ର ଅନ୍ୱେଷଣରେ ଥିଲେ । ସେ ଏହି ରାଜପୁତ୍ରଙ୍କ ସହିତ ତାର ବିବାହ କରାଇଲେ । ରାଜପୁତ୍ର ଯଥା ସମୟରେ ଆପଣା ରାଜ୍ୟକୁ ଯାଇ ସିଂହାସନରେ ବସିଲେ ଏବଂ ରାଣୀଙ୍କ ସଙ୍ଗେ ଆନନ୍ଦରେ କାଳ କଟାଇଲେ ।

## ପ୍ରଶ୍ନ

୧ । ବେଙ୍ଗ ରାଜପ୍ରାସାଦକୁ କାହିଁକି ଗଲା ?

୨ । ରାଜା ଓ ରାଜକନ୍ୟା ତା ପ୍ରତି କିପରି ବ୍ୟବହାର ଦେଖାଇଲେ ?

୩ । ବେଙ୍ଗଟାର ଜୀବନ ବୃତ୍ତାନ୍ତ କହ ।

୪ । ପ୍ରାଚୀନ, ଚିତ୍କାର, ଉତ୍ସବ, ଜନ୍ମିଲା, କୁତ୍ସିତ, ଘୃଣା, ସୁଙ୍ଘା, ସୃଷ୍ଟି, ପ୍ରତିଶ୍ରୁତ, ଶପଥ, ପ୍ରତିଜ୍ଞା, ଠୁଳ୍, ଗପ୍, ବିହ୍ୱଳ, ଅଭିଶାପ, କୁଣ୍ଠ, ଅତିଥି, ନିଦ୍ରା—ଲଗାଇ ବାକ୍ୟ ରଚନା କର ।

୫ । ନିମ୍ନଲିଖିତ ଶବ୍ଦମାନଙ୍କର ବିପରୀତ ଅର୍ଥବୋଧକ ଶବ୍ଦ କହ—ସୁନ୍ଦର, ଅପରାହ୍ଣ, ଶୀତଳ, ଆନନ୍ଦ, ଉପକାରୀ, ବନ୍ଧ, କାନ୍ଦୁଛି, ଅଦୃଶ୍ୟ, ପୂର୍ବରୁ ।

## ମାତ୍ର କଅଣ ନ କରେ !

ଏକସମୟରେ ଜାପାନ ରାଜ୍ୟରେ ଜଣେ ଭଦ୍ରବ୍ୟକ୍ତିଙ୍କର ଗୋଟିଏ ବାଳକ ଭୃତ୍ୟ ଥିଲା । ସେ ପ୍ରତ୍ୟହ ତାଙ୍କର ସମୁଦାୟ କାର୍ଯ୍ୟ ସୁନ୍ଦରଭାବରେ କରି ଚାଲିଯାଏ । କିନ୍ତୁ ତାର ଗୋଟିଏ ବଡ଼ ଦୋଷ ଥିଲା, ସେ ନିଜ ନାମଟା ମନେ ରଖି ପାରୁ ନ ଥିଲା । ସୁତରାଂ ପ୍ରତିଦିନ ସକାଳେ ସେ ମୁନିବଙ୍କ ନିକଟକୁ ଆସି କହେ, "ଆଜ୍ଞା, ମୋ ନାଁ କଣ, ବତାଇ ଦିଅନ୍ତୁ ।" ମୁନିବଙ୍କ ମୁହଁକୁ ହଠାତ୍ ସେ ମୁହୂର୍ତ୍ତରେ ଯେଉଁ ନାମ ଆସେ, ତାକୁ କହନ୍ତି । ମାତ୍ର ବାଳକ ରାତିରେ ଶୋଇବା ସମୟରେ ସେ ନାମଟି ଏକାବେଳକେ ପାସୋରି ଦିଏ । ମୁନିବ ତାକୁ ପ୍ରତ୍ୟେକ ଦିନ ସକାଳେ ଯେଉଁ ନାମ ଦିଅନ୍ତି, ତାର ତାହା ପରଦିନ ସକାଳକୁ ଆଉ ମନେ ନ ଥାଏ ।

ଦିନେ ବାଳକ ସକାଳୁ ଯାଇ ମୁନିବଙ୍କୁ ନିଜ ନାମ ପଚାରିଲା । ମୁନିବ ନାମ କହି କହି ନିତାନ୍ତ ବିରକ୍ତ ହୋଇ ପଡ଼ିଥିଲେ । ସେହି କାରଣରୁ ସେ କ୍ରୋଧରେ ତାକୁ ଆଉ ନାମ ଦେବାକୁ ନାସ୍ତି କଲେ । କିନ୍ତୁ ବାଳକ ସେଥିରେ ନିରସ୍ତ ନ ହୋଇ କାନ୍ଦିବାକୁ ଆରମ୍ଭ କଲା ଏବଂ ନାମ ନିମନ୍ତେ ଅନୁନୟ ବିନୟ କରି ପ୍ରାର୍ଥନା କରିବାରେ ଲାଗିଲା । ଅତଏବ ମୁନିବ ଶେଷରେ ବିରକ୍ତ ହୋଇ କହିଲେ, "ଅଚ୍ଛା, ଏଥର ତୋତେ ମୁଁ ଏକାଥରକେ ଦୁଇଟା ନାଁ ଦେଇଦେଉଛି । ଆଉ କେବେ ଆସି ମୋତେ ନାଁ ପଚାରିବୁ ନାହିଁ ।" ସେ ତାକୁ ଯେଉଁ ଦୁଇଗୋଟି ନାମ ଦେଲେ, ସେଥିରୁ ଗୋଟିଏ 'ଶିହୋବା' ଓ ଅପରଟି 'ଫୁତାବା' । ଜାପାନୀ ଭାଷାରେ 'ଶିହୋବା' ଶବ୍ଦର ଅର୍ଥ 'ଯଥେଷ୍ଟ' ଏବଂ 'ଫୁତାବା' ଶବ୍ଦର ଅର୍ଥ 'ଆଉ ଦରକାର ନାହିଁ' । ନାମ ଦୁଇଟି ପାଇ ବାଳକ କହିଲା, "ମହାଶୟ, ମୁଁ ପୁଣି

ହୁଏ ତ ଭୁଲିଯିବ, ନାଁ ଦୁଇଟିକୁ ମୋ ଦୁଇ ହାତରେ କାଳିରେ ଲେଖିଦିଅନ୍ତୁ ।" ମୁନିବ ବାଳକର ଅନୁରୋଧ ରକ୍ଷାକଲେ; ତା ଦୁଇ କଡେଟିରେ ନାମ ଦୁଇଟି ନାଲି କାଳିରେ ବଡ଼ ବଡ଼ ଅକ୍ଷରରେ ଲେଖିଦେଲେ ।

ବାଳକ ଆନନ୍ଦରେ ନୂଆ ନାମ ଦୁଇଟି ଘୋଷି ଘୋଷି, ମୁନିବଙ୍କ କାର୍ଯ୍ୟରେ ଗୀତ ଗାଇଗାଇକା ଗଲା । ବାଟରେ ଗୋଟାଏ ନଦୀ ପାର୍ ହେବା ସମୟରେ ତା ପାଦରେ ଗୋଟାଏ କଣ୍ଟା ଗଳିଗଲା । ସେ ନିଜ ନାମ ଘୋଷି ହେବା ପୂର୍ବବର୍ତ୍ତୀ ବିକଳରେ ପାଟି କରି କହିଲା, "ଓଃ, ମରିଗଲି ।" ସଙ୍ଗେ ସଙ୍ଗେ ସେ ଦୁଇ ହାତ ଲଗାଇ କଣ୍ଟାଟା ବାହାର କରି ପକାଇଲା । କିନ୍ତୁ ଆଶ୍ଚର୍ଯ୍ୟର କଥା କଣ୍ଟା କାଢ଼ିସାରି ସେ ଦେଖିଲା ଯେ ନାମ ଦୁଇଟି ତା ପାଟିକୁ ଆଉ ଆସୁ ନାହିଁ । ତହୁଁ ସେ ଦୁଇ ହାତ କଡେଟି ଉପରେ ଦୃଷ୍ଟି ପକାଇଲା । କଡେଟିର ବଡ଼ ବଡ଼ ଅକ୍ଷରଗୁଡ଼ାକ ପାଣିରେ ଧୋଇ ହୋଇ ଯାଇଥିଲା । ତାହା ଦେଖି ତା ମନରେ ଭୀଷଣ କ୍ରୋଧ ଜନ୍ମିଲା । ସେ କହିଲା, "ଏ ଦୁଷ୍ଟ ନଦୀ ମୋ ନାମ ଚୋରିକରି ନେଇଛି । ମୁଁ ଏହାକୁ ଛାଡ଼ିବି ନାହିଁ, କଠିନ ଶାସ୍ତି ଦେବି ।"

ଏହାପରି କହି, ବାଳକ ନଦୀ ସ୍ରୋତ ବନ୍ଦ କରିବା ନିମନ୍ତେ ଦୁଇ କୂଳରୁ ପଥର ଖଣ୍ଡମାନ ସଂଗ୍ରହ କରି, ତା ଗର୍ଭରେ ଆଣି ଜମାଇବାରେ ଲାଗିଲା । କେତେକ ସମୟ ପରେ ଜଣେ ବୃଦ୍ଧ କୃଷକ ନିଜ କୁଟୀରରୁ ବାହାରି ପଚାରିଲା, "ଆରେ ପିଲା, ତୁ ମୋ ନଦୀର ସ୍ରୋତ କାହିଁକି ବନ୍ଦ କରୁଛୁ ?" ତାହା ଶୁଣି ବାଳକ ଉତ୍ତର ଦେଲା, "ଓଃ, ତୁମରି ନଦୀ ତେବେ ମୋ ନାଁ ଚୋରେଇଛି । ମୁଁ ନଦୀକି କାହିଁକି ବୃଥା ଦଣ୍ଡ ଦେବି ? ଦଣ୍ଡ ପାଇବାକୁ ହକଦାର ତୁମେ ।" ବାଳକ ତହୁଁ କୃଷକ ବିଚରାକୁ ଧରି ନିସ୍ତୁକ ମାଡ଼ ଚଢ଼ାଇଲା ।

କୃଷକ ବିସ୍ମିତ ହୋଇ ପଡ଼ିଲା, ଏପରି ହଠାତ୍ ଆକ୍ରମଣର କାରଣ ବୁଝିବାକୁ ଅକ୍ଷମ ହେଲା । କେତେକ ସମୟ ମାଙ୍କଡ଼ ଖାଇବା ପରେ ସେ ନିଜ ମାତୃଭାଷାରେ ଯାହା କହିଲା, ତାହାର ଅର୍ଥ ହେଉଛି "ଯଥେଷ୍ଟ, ଆଉ ଦରକାର ନାହିଁ ।" ତା ତୁଣ୍ଡରୁ ଶୁଣାଗଲା, "ଷଣ୍ଢୋବା, ଫନ୍ତାବା ।" ବାଳକ ତାହା ଶୁଣିବାମାତ୍ରେ କୃଷକକୁ ଛାଡ଼ିଦେଇ ଆନନ୍ଦରେ ନାଚଉଠି କହିଲା, "ମୋ ନାଁ ମୁଁ ପାଇଗଲି । ଏତକ ମାଙ୍କଡ଼ ପିଠି ଆଉ ଗାଲରେ ବସି ନ ଥିଲେ, ଏ ଶବ୍ଦଗୁଡ଼ିକ କଣ ସହଜରେ ପେଟରୁ ବାହାରିଥାନ୍ତା । ଓଃ, ମାଙ୍କଡ଼ କଣ ନ କରେ ।"

## ପ୍ରଶ୍ନ

୧ । ପିଲା ପ୍ରତ୍ୟେକ ନାମ ଦେବାକୁ ମୁନିବଙ୍କୁ କାହିଁକି ଅନୁରୋଧ କଲେ ?

୨ । ମୁନିବ ଶେଷରେ ତାକୁ କି ନାମ ଓ କିପରି ଭାବରେ ଦେଲେ ?

୩ । ପିଲା ଯେ କହିଲା "ଓଃ, ମାଙ୍କଡ଼ କଅଣ ନ କରେ ।" ତାହା କାହିଁକି କହିଲା ?

୪ । ବଡ଼ ବଡ଼, ଗାଇ ଗାଇ—ଏପରି ଯୁଗ୍ମ ଶବ୍ଦର ଆଉ ପାଞ୍ଚ ଗୋଟି ଉଦାହରଣ ଦିଅ ।

୫ । ବିସ୍ମିତ, ଆକ୍ରମଣ, ଅକ୍ଷମ, ମାତୃଭାଷା, କୃଷକ, ସଂଗ୍ରହ, ଗର୍ବ, କ୍ରୋଧ, ଭୃତ୍ୟ, ପ୍ରତ୍ୟହ, ପ୍ରତ୍ୟେକ, ପ୍ରାର୍ଥନା, ଅନୁରୋଧ—ଲଗାଇ ବାକ୍ୟ ରଚନା କର ।

---

# କପର ଚନ୍ଦ୍ମାଗଲେ

କେତେକ ବର୍ଷ ତଳେ ଥରେ ରେଲଗାଡ଼ିର ଗୋଟିଏ ଦ୍ବିତୀୟ ଶ୍ରେଣୀ ବଖରାରେ ଅନେକ ଯାତ୍ରୀ ଯାଉଥିଲେ । ସେଥିରେ ଭିଡ଼ ଭଡ଼ ହୋଇଥିବା ଯୋଗେ ଯାତ୍ରୀମାନେ ସ୍ବଚ୍ଛନ୍ଦରେ ବସିବାକୁ ସ୍ଥାନ ପାଉ ନ ଥିଲେ । ତା ଉପରେ ପୁଣି, ଜଣେ ଧନାଢ୍ୟ ଯାତ୍ରୀ, ନିଜର ବହୁତ ଜିନିଷପତ୍ର ଜମାଇ ରଖି, କେତେକ ସ୍ଥାନ ଅଯଥା ଅଧିକାର କରି ବସିଥିଲେ । ସୁତରାଂ କେତେକ ଯାତ୍ରୀଙ୍କୁ ସ୍ଥାନାଭାବରେ ଠିଆହୋଇ ରହିବାକୁ ପଡ଼ୁଥିଲା । ଯାତ୍ରୀମାନେ ତାଙ୍କୁ ଜିନିଷପତ୍ର ଘୁଞ୍ଚାଇବାକୁ ବହୁ ଅନୁନୟ କଲେ ସୁଦ୍ଧା, ସେ ସେଥିରେ କର୍ଣ୍ଣପାତ କଲେ ନାହିଁ ।

ସେହି ଯାତ୍ରୀ ଜଣଙ୍କର ଅତ୍ୟାଚାର ସେତିକିରେ ଶେଷ ହେଲା ନାହିଁ । ରେଲଗାଡ଼ିରେ ଧୂମ୍ରପାନ କରିବା ବିଧିସଂଗତ ନୁହେ । ସହଯାତ୍ରୀମାନଙ୍କ ଅନୁମତି ବ୍ୟତୀତ କେହି ଧୂମ୍ରପାନ କଲେ, ସେଥିପାଇଁ ଦଣ୍ଡର ବ୍ୟବସ୍ଥା ଅଛି । ସେ ଯାତ୍ରୀ ଜଣକ ସହଯାତ୍ରୀ-ବର୍ଗଙ୍କ ନିଷେଧ ସତ୍ତ୍ୱେ ବରାବର ଧୂମ୍ରପାନ କରିବାରେ ଲାଗିଥିଲେ । ଅତିରିକ୍ତ ଧୂମ୍ରପାନ ଯୋଗେ ତାଙ୍କର ଅନବରତ କାଶ ହେଉଥିଲା । ସେ ଖଁ ଖଁ କାଶି ଗାଡ଼ି ଭିତରେ ଘନ ଘନ ଛେପ ଖଙ୍କାର ପକାଉଥିଲେ । ଯାତ୍ରୀମାନେ ଆପତ୍ତି କଲେ, ସେ ସେମାନଙ୍କୁ ନାନା ପ୍ରକାର କୁବାକ୍ୟରେ ତିରସ୍କାର କରୁଥିଲେ ।

ଯାତ୍ରୀମାନଙ୍କ ମଧ୍ୟରେ ଜଣେ, କେତେକ ସମୟ ସବୁ ନୀରବ ଭାବରେ ଦେଖିଗଲା ପରେ, ହାତଯୋଡ଼ି କହିଲେ, "ସେଠଜୀ, ଆପଣ ଦୟା କରି ଏ ଯାତ୍ରୀମାନଙ୍କୁ ଗାଳିଦେବାକୁ ବିରତ ହୁଅନ୍ତୁ, ଦୋଷ ଆପଣଙ୍କର । ଆପଣ ଏଡ଼େ ଏଡ଼େ ଜାଗା ମାଡ଼ି ବସିଛନ୍ତି; ତା ପରେ ପୁଣି, ଛେପ, ଖଙ୍କାର ପକାଇ, ଗାଡ଼ି ଭିତରଟା ନିତାନ୍ତ

ଅସ୍ୱାସ୍ଥ୍ୟକର କରି ପକାଉଛନ୍ତି । ଖଙ୍କାର ଅନୁଗ୍ରହ କରି ବାହାରେ ପକାନ୍ତୁ ।" ସେ କଥା ଶୁଣି, ଧନାଢ୍ୟ ଯାତ୍ରୀଙ୍କ ମନରେ କ୍ରୋଧ ଜନ୍ମିଲା । ସେ ଉତ୍ତର ଦେଲେ, "ତୁମେ ମୋତେ ଶାସନ କରିବାକୁ କିଏ ? ତୁମେ ଯେପରି ଭଡ଼ା ଦେଇଛ, ମୁଁ ମଧ୍ୟ ସେହିପରି ଭଡ଼ା ଦେଇଛି । ଏତେ ତ ଲୋକ ଅଛନ୍ତି, କେହି କିଛି କହୁନାହାନ୍ତି । ତୁମେ ଲାଟ ନା ମାଜିଷ୍ଟ୍ରେଟ୍ ? ତୁମର ଅସୁବିଧା ହେଉଛି ତ, ତୁମେ ଓହ୍ଲାଇ ଅନ୍ୟ ବଗିକୁ ଚାଲିଯାଅ ।"

ସେ ଯାତ୍ରୀ ଜଣକ କହିଲେ, "ମହାଶୟ, ମୁଁ ମୋ ନିଜ ଅସୁବିଧା କଥା କହୁ ନାହିଁ । ମୁଁ ତ ଦୂରରେ ବସିଛି । ଯେଉଁମାନେ ଆପଣଙ୍କ ନିକଟରେ ଅଛନ୍ତି, ଅସୁବିଧା ସେହିମାନଙ୍କର ବେଶି । ସ୍ୱାସ୍ଥ୍ୟ ତାଙ୍କର ଖରାପ ହେବ । ଆପଣ ଏତେ ଛେପ ଖଙ୍କାର ଥୁ ଥୁ ପକାଇବା ଯୋଗେ ତାଙ୍କ ମନରେ ନିଶ୍ଚୟ ଘୃଣା ଜାତ ହେଉଥିବ । ଆପଣ ତ ଜଣେ ବଡ଼ ଲୋକ । ଏ ସହଯାତ୍ରୀମାନଙ୍କୁ ଆଉ କଷ୍ଟ ଦିଅନ୍ତୁ ନାହିଁ ।" ସେ କଥାଗୁଡ଼ାକ ଶୁଣି ଉକ୍ତ ଯାତ୍ରୀ କହିଲେ, "ଓ, ତୁମେ ମୋତେ ଗୀତା, ଭାଗବତ ପଢ଼ାଇବାକୁ ବସିଲଣି, ଦେଖୁଛି । ତୁମେ ସାକ୍ଷାତ ଧର୍ମପୁରୁଷ ଯୁଧିଷ୍ଠିର ନା କଣ ! ଦେଖ, ମୁହଁ ସମ୍ଭାଳି କଥା କହ । ମୁଁ ତୁମ୍ଭା ହୋଇ ସବୁ ସହିଯିବାରୁ ତୁମର ସାହସ ବଢ଼ିଯାଉଛି । ନା, ମୁଁ ବାହାରେ ଛେପ ପକାଇବି ନାହିଁ, ଏହି ଭିତରେ ପକାଇବି; ତୁମେ କଣ କରିବ କର ।" ଏହା କହିସାରି ସଙ୍ଗେ ସଙ୍ଗେ ସେ ଭିତରେ ଲେଣ୍ଡାଏ ଖଙ୍କାର ଥୁ କରି ପକାଇଦେଲେ ।

ଅପର ଯାତ୍ରୀଟି ସେଥିରେ ମର୍ମାହତ ହୋଇଗଲେ । ସେ ଆଉ ବୃଥା ବାକ୍ୟ ବିନିମୟ ନ କରି, ନିଜ ରୁମାଲରେ ଖଙ୍କାରଗୁଡ଼ାକ

ପୋଟ୍ଲି ବାହାରକୁ ପକାଇଦେଲେ । ତାହା ଦେଖି, ଅନ୍ୟ ଯାତ୍ରୀମାନେ ବିସ୍ମିତ ହୋଇ ପଡ଼ିଲେ ଏବଂ ସେହି ଧନାଢ଼୍ୟ ଯାତ୍ରୀଙ୍କୁ କହିଲେ, "ମହାଜନ, ତୁମର କାମଟା ଭଲ ହେଉ ନାହିଁ । ଆଖି ଆଗରେ ଦେଖିଲ, ଆମ ମଙ୍ଗଳପାଇଁ ଗୋଟାଏ ଲୋକ ନିଜେ ତୁମ ଖଙ୍କାର ହାତରେ ଉଠାଇଲା । ଆଉ ଏପରି କର ନାହିଁ ।" ତାହା ଶୁଣି ଧନାଢ଼୍ୟ ଯାତ୍ରୀ ଉତ୍ତର ଦେଲେ, "ହଁ, କାହିଁକି ନ କହିବ ? ତୁମ ମୁହଁ ସେ ବନ୍ଧାଇଦେଲା ନା ।"

ରେଲଗାଡ଼ିର ଗତି ଧୀର ହୋଇ ଆସିଲା । ତାହା କ୍ରମେ ଗୋଟାଏ ଷ୍ଟେସନର ପ୍ଲାଟଫର୍ମରେ ପ୍ରବେଶ କଲା । ପ୍ଲାଟଫର୍ମରେ ଭୀଷଣ ଲୋକାରଣ୍ୟ ହୋଇଥିଲା । ଶହ ଶହ ମୁଖରୁ ଏକ ସ୍ୱରରେ ଶୁଣାଯାଉଥିଲା, "ମହାତ୍ମା ଗାନ୍ଧିଙ୍କ ଜୟ ।" ତାହାସବୁ ଦେଖି, ସେ ବଖରାର ଯାତ୍ରୀମାନେ କହିଲେ, "ଏ ଗାଡ଼ିରେ ବୋଧହୁଏ ମହାତ୍ମା ଗାନ୍ଧି ଯାଉଛନ୍ତି । ତାଙ୍କ ଦର୍ଶନ ନିମନ୍ତେ ଏ ଲୋକେ ରୁଣ୍ଡ ହୋଇଛନ୍ତି ନିଶ୍ଚୟ ।" ସେ କଥା ଶୁଣନ୍ତେ ଧନାଢ଼୍ୟ ଯାତ୍ରୀଟି କହିଲେ, ଏଠାରେ ଗାଡ଼ି କିଛି ସମୟ ରହିବ । ଓହ୍ଲେଇ ମହାତ୍ମା ଗାନ୍ଧିଙ୍କୁ ଥରେ ଦର୍ଶନ କରିନେବା ।"

ଯେଉଁ ଯାତ୍ରୀ ଜଣକ ତାଙ୍କ କାର୍ଯ୍ୟର ପ୍ରତିବାଦ କରିଥିଲେ, ସେ ସେଠାରେ ଓହ୍ଲାଇବାକୁ ବାହାରିଲେ । ପ୍ଲାଟଫର୍ମର ଜନତା, ତାଙ୍କୁ ଦେଖିବାମାତ୍ରେ, 'ମହାତ୍ମା ଗାନ୍ଧିଙ୍କ ଜୟ' ଘନଘନ କହିବାରେ ଲାଗିଲେ । ତାଙ୍କ ଉପରେ ଚତୁର୍ଦ୍ଦିଗରୁ ପୁଷ୍ପ ବୃଷ୍ଟି ହେଲା । ସେ ଯେ ନିଜେ ମହାତ୍ମା ଗାନ୍ଧି, ତାହା ବୁଝିବାରେ କାହାରି ଆଉ ବାକି ରହିଲା ନାହିଁ । ସେ ଗାଡ଼ିରୁ ଓହ୍ଲାଇବାମାତ୍ରେ, ତାଙ୍କ ଗୁରୁପଟେ ଲୋକେ ଦଉଡ଼ି ଘେରି ଦେଇଦେଲେ । ଧନାଢ଼୍ୟ ଯାତ୍ରୀ ଜଣକ ଭିଡ଼ରେ

ଓହ୍ଲାଇ ନ ପାରି ଗାଡ଼ି ଉପରୁ ବିନୀତଭାବରେ ପ୍ରଣାମ ଜଣାଇଲେ।
ସେତେବେଳେ ମହାତ୍ମା ଗାନ୍ଧିଙ୍କ ଦୃଷ୍ଟି ତାଙ୍କ ଉପରେ ପଡ଼ିଗଲା।



ତହୁଁ ସେ ହାତ ଯୋଡ଼ି ପ୍ରତି ନମସ୍କାର କଲେ। ସଙ୍ଗେ ସଙ୍ଗେ ରେଲଗାଡ଼ି ପ୍ଲାଟଫର୍ମ ଛାଡ଼ିଦେଲା।

## ପ୍ରଶ୍ନ

୧। ଧନାଢ଼୍ୟ ଯାତ୍ରୀ ଗାଡ଼ି ଭିତରେ ଅନ୍ୟ ଯାତ୍ରୀମାନଙ୍କର କି ଅସୁବିଧା କରୁଥିଲେ ?

୨। ମହାତ୍ମା ଗାନ୍ଧି ତାଙ୍କୁ କଣ କହିଲେ ?

୩। ଗାନ୍ଧିଜୀ ଓହ୍ଲାଇବାବେଳେ କି ଘଟଣାମାନ ଘଟିଲା ?

୪ । ଶୂନ୍ୟ ସ୍ଥାନଗୁଡ଼ିକ ପୂର୍ଣ୍ଣକର :—

(କ) ସନ୍ଧ୍ୟା—ରେଲଗାଡ଼ି ଛାଡ଼ିଦେଲା ।

(ଖ) ତାଙ୍କ ଉପରେ ଚତୁର୍ଦ୍ଦିଗରୁ—ବୃଷ୍ଟି ହେଲା ।

(ଗ) ମହାତ୍ମା ଗାନ୍ଧିଙ୍କୁ ଥରେ—କରନେବା ।

(ଘ) ଦେଖ, ମୁହଁ—କଥା କହ ।

୫ । ବଗିଚା, ପ୍ରତି ନମସ୍କାର, ବୃଷ୍ଟି, ଦର୍ଶନ, ମୁହଁବଢ଼ାଇ-ଦେଲା, ଘୃଣା, ଅନୁଗ୍ରହ, ମର୍ମାହତ, ଦୟା, ଅତରକ୍ତ—ଲଗାଇ ବାକ୍ୟ ରଚନା କର ।

---

## ଜୁଳୁଜୁଳା ପୋକ

ରାମ ଓ ଶ୍ୟାମ ଦୁଇ ଭାଇ ଦୁହେଁ ମାମୁଘରକୁ ଯାଉଁ ଯାଉଁ ବାଟରେ ସନ୍ଧ୍ୟା ହୋଇଆସିଲା । ସେତେବେଳକୁ ସେମାନେ ଗୋଟାଏ ପ୍ରକାଣ୍ଡ ଅମ୍ବତୋଟା ଭିତରେ ପ୍ରବେଶ କରୁଥିଲେ । ଏକେ କୃଷ୍ଣପକ୍ଷ ରାତି; ତା ଉପରେ ପୁଣି, ମେଘ ଘୋଡ଼ାଇବା ଯୋଗେ ଚତୁର୍ଦ୍ଦିଗରେ ଭୀଷଣ ଅନ୍ଧକାର ଘୋଟି ରହିଥିଲା । ତୋଟାଟା ଅତିକ୍ରମ କରିଗଲେ, ତାଙ୍କ ମାମୁଘର ଗ୍ରାମ ପଡ଼ିବାର କଥା । ମାତ୍ର ତୋଟା ଭିତରେ ନିବିଡ଼ ଅନ୍ଧକାରରେ ସେମାନଙ୍କୁ ବାଟ ଆଦୌ ଦେଖାଗଲା ନାହିଁ । ସେମାନେ ଯେତେ ଅଣ୍ଟାଳି ଚାଲିଲେ, ପାଦ ବିପଥରେ ପଡ଼ିବାରେ ଲାଗିଲା । ବେଳେ ବେଳେ ଗଛର ଗଣ୍ଡିରେ ଯାଇ ପିଟିହୋଇ ତାଙ୍କର ଆଘାତ ପାଇବା ସାର ହେଲା ।

କ୍ରମେ ଅସ୍ତାଏ ଝିପ୍ ଝିପ୍ ବର୍ଷା ହେଲା । ଗଛ ଡାଳମାନଙ୍କରୁ ପାଣି ଟପଟପ ପଡ଼ିଲା । କ୍ଷୁଦ୍ର କ୍ଷୁଦ୍ର ପ୍ରଦୀପ ପରି ବହୁ ସଂଖ୍ୟକ ଆଲୋକ ସମଗ୍ର ତୋଟାରେ ଏଣେ ତେଣେ ଦେଖାଗଲା । ସେଗୁଡ଼ିକ ଥରେ

ଜଳ ଥରେ ନଭୁଥାଏ । କ୍ରମଶଃ ତାଙ୍କ ସଂଖ୍ୟା ବୃଦ୍ଧି ପାଇଲା ଏବଂ ତାଙ୍କ ଅଲୋକରେ ଛୋଟା ମଧ୍ୟର ବାଟ ଥରକୁ ଥର ଅସ୍ପଷ୍ଟ ଦିଶିବାକୁ ଆରମ୍ଭ କଲା । କୌଣସି କୌଣସି ସ୍ଥାନରେ ଦଶ ବା ପନ୍ଦର ଅଲୋକ ବିନ୍ଦୁ ଏକତ୍ର ହୋଇଗଲେ, ବାଟ କ୍ଷଣକ ନିମନ୍ତେ ପରିଷ୍କାର ଦିଶିଯାଏ । ସେହି ଅସଂଖ୍ୟ ଅଲୋକ ବିନ୍ଦୁ ସାହାଯ୍ୟରେ ଦୁଇ ଭାଇ ଅଗ୍ରସର ହେବାରେ ଲାଗିଲେ । ତହୁଁ ସେମାନେ କହିଲେ, "ହେ ଅଲୋକ ବିନ୍ଦୁଗଣ, ତୁମେ ଆମର ଏତେ ଉପକାର କରୁଛ, ଏ ଦୁଃସମୟରେ ଆମର ପରମ ବନ୍ଧୁ ହୋଇଛ । ସେଥିପାଇଁ ଆମେ ତୁମପାଖରେ ଅତ୍ୟନ୍ତ କୃତଜ୍ଞ । ମାତ୍ର ଆମେ ତୁମକୁ ଚିହ୍ନିପାରୁନାହୁଁ, ଅନୁଗ୍ରହ କରି ନିଜର ପରିଚୟ ଦିଅ ।"

ତାହା ଶୁଣି ଗୋଟିଏ ଅଲୋକ ବିନ୍ଦୁ ଅଗ୍ରସର ହୋଇ, କହିଲା, "ମୋତେ ଅଳ୍ପଙ୍ଗଜ୍ଞ ଚିହ୍ନିନାହଁ, ଏହା ବିସ୍ମୟର କଥା । ପଣ୍ଡିତମାନେ ଆମମାନଙ୍କୁ 'ଖଦ୍ୟୋତ' ନାମ ଦେଇଛନ୍ତି । କେହି କେହି ଆମକୁ 'ଜ୍ୟୋତିରିଙ୍ଗଣ' ମଧ୍ୟ କହିଥାନ୍ତି । ଆମେ ଦିବସରେ ଅଦୃଶ୍ୟ ହୋଇଯାଉଁ । କାରଣ ସେତେବେଳେ ସୂର୍ଯ୍ୟଦେବ ଆକାଶ ଦେଶରୁ ଉଜ୍ଜ୍ୱଳ କିରଣମାଳା ଢାଳୁଥାନ୍ତି । ରାତିରେ ଚତୁର୍ଦ୍ଦିଗ ଅନ୍ଧାର ହେଲେ, ବିପଥଗାମୀ ପଥିକକୁ ବାଟ ଦେଖାଉଁ ଆମେ । ମୁଁ ନାରୀ; ଜ୍ୟୋତି କେବଳ ମୋର ଅଛି । ମୋ ସ୍ୱାମୀ ମଧ୍ୟ ମୋରି ପରି ଅନ୍ଧକାରରେ ଉଡ଼ନ୍ତି । କିନ୍ତୁ ତାଙ୍କର ଜ୍ୟୋତି ନାହିଁ, ମୋ ଦେହର ଅଲୋକ ଦେଖି ସେ ମୋ ନିକଟକୁ ଉଡ଼ି ଆସିପାରନ୍ତି ମୋ ଡେଣା ଦିଓଟି ନିତାନ୍ତ କ୍ଷୁଦ୍ର ହେବା ଯୋଗେ ମୁଁ ସ୍ୱଚ୍ଛନ୍ଦରେ ଉଡ଼ିପାରେ ନାହିଁ । ଈଶ୍ୱର ମୋତେ ବଡ଼ ବଡ଼ ଡେଣା ପରିବର୍ତ୍ତେ ଅଲୋକ ଦେଇଛନ୍ତି । ସେହିପରି ସେ ମୋ ସ୍ୱାମୀଙ୍କୁ ଦେଇଛନ୍ତି ବଡ଼ ବଡ଼ ଡେଣା, ମାତ୍ର ଅଲୋକରୁ ବଞ୍ଚିତ କରିଛନ୍ତି ।

"ମୋର ସନ୍ତାନ ପ୍ରସବ କରିବା ସମୟ ହେଉଛି ଶରତ୍ ଋତୁ । ଜନ୍ମ ହେବା ପରେ ମୋ ସନ୍ତାନମାନେ କେତେକ ସପ୍ତାହ ଭୂମିରେ ବୁଲନ୍ତି ଏବଂ ହେମନ୍ତ ଋତୁରେ ଜଙ୍ଘ ବୁଲନ୍ତି । ବସନ୍ତ ଋତୁର ଆଗମ ପର୍ଯ୍ୟନ୍ତ ସମଗ୍ର ଶୀତ କାଳରେ ସେମାନେ ଖାଇ ବଢ଼ିବାରେ ଲାଗନ୍ତି । ମୁଁ ତାଙ୍କ ମା ହେଲେ କଣ ହେବ, ତୁମ ମା ତୁମକୁ ଦୁଧ ଭାତ ଖୁଆଇଲା ପରି, ମୁଁ ତାଙ୍କୁ ଖୁଆଇ ପାରେ ନାହିଁ । ସେମାନେ ବୁଲି ବୁଲି ଗେଣ୍ଡା କୋଣଅ ଅଧ ଖାଅନ୍ତି । ଶୀତ ଋତୁରେ ଗେଣ୍ଡାମାନେ ଭୂଇଁର ଫାଟମାନଙ୍କରେ ନିଦ୍ରାରେ ଶୋଇ ରହନ୍ତି । ମୋ ସନ୍ତାନମାନେ ସେଠାକୁ ଯାଇ ତାଙ୍କ ମାଂସ ଟିକି ଟିକି କରି କାଟି ଖାଇବାରେ ଲାଗନ୍ତି ।"

"ଆମ ଜାତ ଜୀବଙ୍କର ଗେଣ୍ଡା ଖାଇବା ସହଜ ବ୍ୟାପାର ନୁହେ । ଗେଣ୍ଡାମାନେ ଆତ୍ମରକ୍ଷା କରିବା ନିମନ୍ତେ ପେଟରୁ ଲାଳ ବାହାର କରି ଆମ ଦେହରେ ବୋଳି ଦିଅନ୍ତି । ସେଥିରେ ଆମ କ୍ଷୁଦ୍ର ଡେଣା ବାନ୍ଧ ହୋଇଯିବାକୁ ବସେ । ସେ ଲାଳ ଆମ ଡେଣାରେ ଲାଗି ଶୁଖିଗଲେ, ଡେଣା ଅକାମୀ ହୋଇଯାନ୍ତା । କିନ୍ତୁ ଲାଳ ଆମ ଦେହ ସ୍ପର୍ଶ କରିବା ମାତ୍ରେ ଆମେ ତାକୁ ଆମ ଲାଞ୍ଜରେ ପୋଛି ପକାଉଁ । ସେଥିରେ ଆମର ବହୁ ସମୟ ବୃଥା କଟିଯାଏ । ନଚେତ୍, ଆମେ ଅଧିକ ଅଧିକ ଗେଣ୍ଡା ଖାଇପାରନ୍ତୁ ।

"ଗେଣ୍ଡା ତୁମ ମନୁଷ୍ୟ ଜାତିର ବହୁତ ଅପକାର କରେ । ତାହା କୋବି ପ୍ରଭୃତି ନରମ ଶାକ ସବଜି ଗଛର ଚେର କାଟି ପକାଏ, ପତ୍ରରେ ବ୍ରଣ କରିଦିଏ ଓ ଫୁଲ୍ କୋବି ଖାଇଯାଏ । ତାହା ତୁମର ପରମ ଶତ୍ରୁ, ତୁମର ସେହି ଶତ୍ରୁକୁ ମାରି, ତା ମାଂସ ଖାଇ, ଆମେ ଜୀବନ ଧାରଣ କରୁଁ ଓ ଅନ୍ଧକାରରେ ତୁମକୁ ବାଟ କଢ଼ାଉଁ । ବର୍ତ୍ତମାନ ତୁମେ ବୁଝୁଥିବ ଯେ ଦିବସରେ ଆମେ ତୁମ ବଗିଚ୍ଚ ଜଗୁ

ଓ ରାତରେ ତୁମ ଅଗରେ ଦଉଡ଼ ମଶାଲ୍ ଜାଳୁ । ସେଥିପାଇଁ ତୁମେ ଅମକୁ ଯେ ଆଦର କର, ତା କୁହେ । ଦୁଷ୍ଟ ପିଲ୍ମାନେ ଅମକୁ ଧରି, ଦଶ ପନ୍ଦର ଏକଜା କରି, ଲୁଗା କାନିରେ ବାନ୍ଧି ଖେଳନ୍ତି । ସେଥିରେ କଣ ଅମର ଆନନ୍ଦ ହେଉଥିବ ? ତାହା ଅମ ପକ୍ଷରେ ମୃତ୍ୟୁ । ତା ପରେ ପୁଣି, ଅମକୁ ଗୋଟିଏ ଭଲ ନାମ ଦେଲେ କଣ ତୁମର କ୍ଷତି ହୁଅନ୍ତା ? ଅମେ ତୁମ ମନୁଷ୍ୟ ଜାତିରେ 'ଜୁଳୁଜୁଳା ପୋକ' ନାମରେ ପରିଚିତ ହେଉଁ ।"

## ପ୍ରଶ୍ନ

୧ । ଜୁଳୁଜୁଳା ପୋକ ଅମର କି ଉପକାର ବା ଅପକାର କରନ୍ତି ?

୨ । ସେମାନେ କଣ ଓ କି ଉପାୟରେ ଖାଅନ୍ତି ?

୩ । ରାମ ଓ ଶ୍ୟାମ ଦୁଇ ଭାଇ ଅନ୍ଧକାରରେ ଅମ୍ବତୋଟାରେ କିପରି ବାଟ ପାଇଲେ ?

୪ । ପ୍ରବେଶ, ଭୀଷଣ, ଅନ୍ଧକାର, ସଂଖ୍ୟା, ବୃଦ୍ଧି, ସ୍ୱଚ୍ଛନ୍ଦ, ସନ୍ତାନ, ବ୍ୟାପାର, ସ୍ୱର୍ଗ, ପରମ, ଶତ୍ରୁ, କ୍ଷତି, ପରିଚିତ—ଲଗାଇ ବାକ୍ୟ ରଚନା କର ।

୫ । ଶତ୍ରୁ, ଅନ୍ଧକାର, ଦିବସ, ଭଲ, ନାହିଁ, ପଣ୍ଡିତ, ଅସ୍ପଷ୍ଟ, କ୍ଷୁଦ୍ର—ଏମାନଙ୍କର ବିପରୀତ ଅର୍ଥବୋଧକ ଶବ୍ଦ କହ ।।

---

## ନଅ ମୋର ମୁଣ୍ଡ ବଳି

ଭୋଇ ବଂଶ ନୃପେ ହରାଇ, ଫିରଙ୍ଗି
ଜିଣିଲେ ଖୋରଧା ରାଜ୍ୟ;
ଗୋରା କର୍ମଚାରୀ ଅଣାଇ ସ୍ୱଦେଶୁଁ,
ଚଳାଇଲେ ରାଜକାର୍ଯ୍ୟ ।

କେ ଶିର ନୁଆଇଁ ମାନିଲା ଶାସନ,
କର ଗଣିଦେଲା କେତୁ;
କେବଳ ପାଇକେ କହିଲେ, "ଲଢ଼ିବୁଁ
ମୁଣ୍ଡ ଗଲାଯାଏ ଦେହୁଁ ।"
ଖୋରଧା ବକ୍ସି ବୀର ଜଗବନ୍ଧୁ
ହାରିଯାଇଛନ୍ତି ରଣେ,
ଗୋରା କର୍ମଗୁଷ୍ଠି ଦେଖାନ୍ତି ପ୍ରତାପ
ଗ୍ରାମେ ବିଲେ ପଦା ବନେ ।
ତଥାପି ତାପଙ୍ଗ ଗଡ଼େ ନ ପାରନ୍ତି
ସହଜେ ପକାଇ ପାଦ;
ତା ଦଳବେହେରା ପ୍ରଜାପୁଞ୍ଜ ଧରି
ସୃଜନ୍ତି ଘୋର ପ୍ରମାଦ ।
ଯେତକ ବାହୁରେ ଶକତି ତାଙ୍କର,
ଦ ଗୁଣ ଦୟା ହୃଦୟେ;
ପ୍ରଜାପୁଞ୍ଜ ପଛେ ନିଜେ ନାଶ ଯିବେ,
ତାଙ୍କୁ ନ ତେଜିବେ ଭୟେ ।
ନ ସହି ପାରିଲେ ଗୋରା କର୍ମଗୁଷ୍ଠି,
କହିଲେ, "ଲଗାଏ ନାଠ,
ତାପଙ୍ଗ ତାକୁ ମୋ ଉଡ଼ିବା ନକର;"
ପେଷିଲେ ଫିରଙ୍ଗି ଥାଟ ।
ଦୁଇ ଥାଟେ ଯୁଦ୍ଧ ଲାଗିଲା ବିଷମ,
ତଳେ କାର ନାହିଁ ହେଲା;
ସାତ ଦିନ ଅନ୍ତେ ସରିଲା ସମର,
ହାରିଲେ ଦଳବେହେରା ।

ତାପଙ୍କ ମେଲଣି ମାଗି ସେ ବୁଲିଲେ,
ବୁଲିଲେ ବନସ୍ତ ଗିରି;
କି ଖାଆନ୍ତି, କାହିଁ ଯାପନ୍ତି ଯାମିନୀ,
କେହୁ ଜାଣି, ପାଇବଣି ଥରି।
ଛଆପି ତାପଙ୍କ ଗଡ଼େ, ବାଳବୃଦ୍ଧ
ନିତ ସୁମରନ୍ତି ନାମ;
ଶୁଣି ଶୁଣି ତୁରେ ବଧିର ହୁଅଇ
ଫିରଙ୍ଗି ହାକିମ କାନ।
କହିଲେ କ୍ରୋଧେ ସେ, "ସତ୍ରୁ ଯେବେ ତାର
ବେଗେ ମୁଁ ନ କରେ ଲୋପ,
ଶାସନ ତ ମୋର ହୋଇବ ଅଚଳ,
ଜାଳିବ ମୋତେ ଏ ମା କୋପ।"
ସମଗ୍ର ଖୋରଧା ରାଜ୍ୟେ ପ୍ରଚରିଲା,
"ଦୁଷ୍ଟ ଦଳବେବେହେ୍ବର
ମୁଣ୍ଡ କାଟି ଯେହୁ ଅଣିବ, ପାଇବ
ସୁନା ଥଳି ପୁରସ୍କାର।"
ବେଗେ ବାହିଗଲେ ଖଣ୍ଡାୟତ ବୀରେ
ଗଡ଼ୁଁ ଗଡ଼େ ଗ୍ରାମୁଁ ଗ୍ରାମେ;
ଖଣ୍ଡାୟତ କୁଳ ମାନ ଯେ ରଖିଛୁ,
ମରଇ ନ ଦେବେ ପ୍ରାଣେ।
ବୁଲନ୍ତି ବଧକ ଗୋଇନ୍ଦା ଘାତକ,
ଧନର କେଡ଼େ ମହିମା !
ମୁଣ୍ଡ ଯେବେ କାଟି ଅଣିବେ, ରହିବ
ନାହିଁ ସମ୍ପଦର ସୀମା।

ଖଣ୍ଡ'ଯୁଦ୍ଧ ଲାଗେ କେତେ ପଦା ବିଲେ,
କେତେ କେ ହୁଅନ୍ତି ଖୁଣି;
ପାଇକ ଯୋଦ୍ଧା ଲଢ଼ି ହୋଇଯାନ୍ତି
ସୁହାଁସୁହିଁ ପୁଞ୍ଜ ଓଣି !
ଦଳବେହେରାଙ୍କ ଘୁଞ୍ଚ ସେ ଧାଡ଼କେ
ଖୋଜି ଯେ ପାଆନ୍ତି ନାହିଁ;
ସୁନା ଥାଳ ନୂଆ ଯିବ କ୍ଷି, ରାଇଜେ
ଛନି ଲକ୍ଷ ଲୋକ ଥାଇ ?
ଦିନେ ବନପ୍ରାନ୍ତେ ବିମର୍ଷ ପଥିକ
ପୃଚ୍ଛେ ବନବାସୀ ଭେଟି,
"ଢାପଙ୍ଗ ଯିବାର ପଥ କହିଦିଅ,
ଯିବି ମୁଁ
କେବଥି ମୋ କାଉ, ବୁଢ଼ୀ ନଜକା
ଚିଲ୍‌କା ଅଚଳ ଗଣ୍ଡେ;
ଗ୍ରାମେ ଘର ପୋଡ଼ି ବାସ ଗୁଲ୍‌ଗଲା,
ଭୋଗେ ମୁଁ ଦାଇବ ଦଣ୍ଡେ !
ଛାପଙ୍ଗ ଗଡ଼ର ଦଳବେହେରାଙ୍କୁ
ମାଗି କେ ନୋହୁଛୁ ବ୍ୟର୍ଥ;
ମୁଁ ଯାଇ କହିଲେ ମୋ ଦୁଃଖ ଗୁହାରି,
ଲେଉଟିବ ଧର ଅର୍ଥ ।"
ଶୁଣି ବନବାସୀ ରୋଧି ଅଟ୍ଟହାସ
କହିଲେ, "ଅସ ମୋ ସାଥି,
ଅର୍ଥ ଯହିଁ କଷ୍ଟେ ମିଳିବ, ତାଙ୍କେ ମୁଁ
ନେଇଯିବି" ବାଠ କାଟି ।"

ଅଗେ ବନବାସୀ ଘୂଲନ୍ତି, କୈବଣ୍ଡି
ଅନ୍ନସରେ ଭୁଲ୍ କ୍ଳେଶ;
ସକାଳୁ ମଧ୍ୟାହ୍ନ ହୋଇଗଲା ଯହୁଁ,
ପଥ ଶ୍ରମ ହେଲା ଶେଷ ।



କାର୍ଯ୍ୟାଳୟେ ବସି ଗୋରା କର୍ମଚାରୀ
ବିବ୍ରତ ଖୋଦଧା ଗଡ଼େ;
ଢାପଙ୍କର ଦଳବେହେସ ନ ମିଳେ—
କପାଳ ଠୁକନ୍ତି କରେ ।

ଠେକି ମୁଣ୍ଡ ଘୁଞ୍ଚି ଦେଖିଲେ, ଅଚାନ୍ହା
ଲୋକ କେ ହୋଇଛି ଠିଆ,
ଦାଢ଼ି ନଖ ବଢ଼ି ବନବାସୀ ଜଣେ;
ଘୃଣ୍ଡ ତଳେ କମେ ହିଆ ।
ପୁଚ୍ଛିଲେ, "କି କାର୍ଯ୍ୟେ ଅସିଛ, ଜଙ୍ଗଲି;"
ଉତ୍ତର ଶୁଣନ୍ତି ଜ୍ଞସ—
"ତାପଙ୍ଗର ଦଳବେହେରା ମୁଣ୍ଡକୁ
ସୁନା ଥଳି ଦେବ ପରା ?
ମୁହିଁ ସେହି ଦଳବେହେରା, ମୋତେ ଏ
କୈବର୍ତ୍ତି ଅଣିଛି ଧରି;
ବଡ଼ ଦୁଃଖୀ ଜନ, ଦିଅ ତାରେ ଧନ,
ନିଅ ମୋର ମୁଣ୍ଡ ବଳି ।"
ଶୁଣି କର୍ମଗୁରୁ ଫିକା ପଡ଼ିଗଲେ,
ପୋତିଲେ ଦୁର୍ଦ୍ଧର୍ଷ ମଥା;
କାର୍ଯ୍ୟାଳୟ ସାରା ନୀରବ ନିସ୍ତବ୍ଧ
ମୁଖେ କା ନ ସ୍ଫୁରେ କଥା ।

ପ୍ରଶ୍ନ

୧ । ତାପଙ୍ଗ ଦଳବେହେରାଙ୍କୁ କାହିଁକି ବନବାସୀ ହେବାକୁ ପଡ଼ିଲା ?

୨ । ସେ କିପରି ଧରା ପଡ଼ିଲେ ?

୩ । କର୍ମଗୁରୁ, କୈବର୍ତ୍ତି, ବନବାସୀ, ପାଇକ ହୋଇ ଏ ବିଷୟରେ ଅଭିନୟ କର ।

୪ । ନ ସ୍ଫୁରିଲା, ଦୁର୍ଦ୍ଧର୍ଷ, ବଳି, ଅଚାନ୍ହା, ବିବ୍ରତ, ଅର୍ଥ, ବ୍ୟର୍ଥ, ସମ୍ପଦ, ପୁରସ୍କାର, ସତ୍ତା, ବିମର୍ଷ—ଲଗାଇ ବାକ୍ୟ ରଚନା କର ।

୫ । ସୁଙ୍ଗାସୁଙ୍ଗି ଶବ୍ଦର ତାତ୍ପର୍ଯ୍ୟ କଣ ? ଏହିପରି ଆଉ ପାଞ୍ଚଗୋଟି ଶବ୍ଦ କହ ।

---

## ତୁରସ୍କ ପିଲାଙ୍କ ଚାଲିଚଳନ

ଥରେ ତୁରସ୍କ ଦେଶର ଗୋଟିଏ ପିଲା ତା ପିତାଙ୍କ ସହିତ କଲିକତା ଆସିଥିଲା । କଲିକତାରେ ସେ ଯାଦୁଘର, ଚିଡ଼ିଆଖାନା ଆଦି ତ ବୁଲି ବୁଲି ଦେଖିଲା; ଅଳ୍ପ ବୟସ ପିଲାମାନଙ୍କର ଅନେକ ବିଦ୍ୟାଳୟକୁ ମଧ୍ୟ ଗଲା । ସେ ସେହି ପିଲାଙ୍କ ସହିତ କଥାବାର୍ତ୍ତା ଅବଶ୍ୟ ହୋଇପାରିଲା ନାହିଁ; କାରଣ, କେହି କାହାର ଭାଷା ଜାଣି ନ ଥିଲେ । କିନ୍ତୁ ତୁରସ୍କର ପିଲାଟି ଚହ୍ଲା ଅଚହ୍ଲା ନ'ବାରୁ, କଲିକତା ବିଦ୍ୟାଳୟ ଗୁଡ଼ିକର ପିଲାଙ୍କ ସଙ୍ଗେ ନିତାନ୍ତ ଘନିଷ୍ଠ ଭାବରେ ମିଶିଗଲା । ତୁରସ୍କର ପିଲାମାନଙ୍କ ଚାଲିଚଳନ ବିଷୟ ସେହି ପିଲାଟିଠାରୁ ଜାଣିବା ନିମନ୍ତେ କଲିକତା ପିଲାମାନେ ଆଗ୍ରହ ଦେଖାଇଲେ । ତୁରସ୍କ ପିଲାଟି ନିଜ ମାତୃଭାଷାରେ ଯାହା ବର୍ଣ୍ଣନା କଲା, ତା ପିତା ତାକୁ ଅନୁବାଦ କରି କଲିକତା ପିଲାଙ୍କୁ ବୁଝାଇବାରେ ଲାଗିଲେ ।

ପିଲାଟି କହିଲା, "ପିଲାଙ୍କର ମାତୃ ଗର୍ଭରୁ ପଡ଼ିବା ସମୟଠାରୁ ଆରମ୍ଭ କରି ମୁଁ କହିଯାଉଛି, ଶୁଣ । ଶିଶୁ ଜନ୍ମ ଗ୍ରହଣ କରିବା ମାତ୍ରେ ତାର କ୍ଷୁଦ୍ର ଦେହଟିକୁ ଲୁଗାପଟାରେ ଆବୃତ କରିଦିଆଯାଏ । ସେପରି କରିବାର କାରଣ ଅଛି । ଆମ ଦେଶରେ ପିତାମାତାଙ୍କର ବିଶ୍ୱାସ ଯେ ଶିଶୁର ଦେହ ଖାଲି ଥିବାର ଦେଖିଲେ ଭୂତ ପ୍ରେତ ତାକୁ ଗ୍ରାସ କରିଯିବେ । ତାକୁ ଭୂମିରେ ଶୁଆଇ ରଖାଯାଏ ନାହିଁ, କାଠ ଦୋଳିରେ ତା ଶୋଇବା ସ୍ଥାନ ନିର୍ଦ୍ଦେଶ କରାହୁଏ । କେହି କେହି ମନ୍ତ୍ର ବଳରେ ଶିଶୁର ରିଷ୍ଟ ଖଣ୍ଡନ କରିବା ଅଭିପ୍ରାୟରେ

ସେଥିରେ ନାନା ମନ୍ତ୍ର ଯନ୍ତ୍ର ଲେଖନ୍ତି । ଶିଶୁ ଜନ୍ମ ଗ୍ରହଣ କରିବା ପରେ ତୃତୀୟ ଦିନ ପିତା ତାର ନାମ କରଣ କରନ୍ତି । ସେ ନାମଟି ତା କାନରେ ତିନିଥର କହିଦିଅନ୍ତି ।

"ପିଲାମାନେ ବୟସରେ ବଢ଼ିବା ପରେ ସକାଳେ ଶଯ୍ୟା-ତ୍ୟାଗ କରି, ମୁହଁ ଧୋଇ, ଘରେ ଭାତ ପିଠା ଯାହା ଥାଏ ଖାଇ, ପାଠଶାଳାକୁ ପଢ଼ିବାକୁ ଯାଆନ୍ତି । ପାଠଶାଳାର ପିଲାମାନେ ବେଞ୍ଚ ଉପରେ ବସନ୍ତି ନାହିଁ, ଚଟାଣରେ ଚଟା ପକାଇ ବସନ୍ତି । ଶିକ୍ଷକଙ୍କର ବସିବା ଆସନ କାଠରେ ପ୍ରସ୍ତୁତ ହୋଇଥାଏ । ମଧ୍ୟାହ୍ନ ଭୋଜନ ନିମନ୍ତେ ଦୁଇ ପହରେ ଏକ ଘଣ୍ଟା ଛୁଟି ହୁଏ । ପିଲାମାନେ ସେତେବେଳେ ଘରକୁ ଯାଇ ଖାଇ ପିଇ ପୁଣି ପାଠଶାଳାକୁ ଆସନ୍ତି ।

ପୂର୍ବେ ପାଠଶାଳାରେ ଆମ ଦେଶ ପିଲମାନଙ୍କ ପାଠ୍ୟ ଥିଲା କୋରାଣ । ପ୍ରତିଦିନ ସେମାନେ ସେଥିରୁ କେତେ ଗୋଟି ଶ୍ଳୋକ ମୁଖସ୍ଥ କରୁଥିଲେ । କୋରାଣ ମୁଖସ୍ଥ ହୋଇଯିବା ସଙ୍ଗେ ସଙ୍ଗେ ଶିକ୍ଷା ଶେଷ ହେଉଥିଲା । ମାତ୍ର ବର୍ତ୍ତମାନ ଇଉରୋପୀୟ ରୀତିରେ ଶିକ୍ଷା ପାଇବାର ବିଧାନ ହୋଇଅଛି; ପିଲମାନଙ୍କୁ ସାହିତ୍ୟ, ଗଣିତ, ଭୂଗୋଳ, ଇତିହାସ ଆଦି ନାନା ବିଷୟ ଅଧ୍ୟୟନ କରିବାକୁ ପଡ଼ୁଛି । ପୂର୍ବେ କେବଳ ବାଳକମାନେ ଶିକ୍ଷାଲାଭ କରୁଥିଲେ; ବିଦ୍ୟାଳୟରେ ବାଳିକାମାନଙ୍କର ପ୍ରବେଶ ନିଷିଦ୍ଧ ଥିଲା । ବାଳିକାମାନେ ବାଳକ-ମାନଙ୍କ ସହିତ ଏକତ୍ର ପଢ଼ିବା, ଖେଳିବା ଆଦି କିଛି କରି ପାରୁ ନ ଥିଲେ । ଦଶ ବାର ବର୍ଷ ବୟସ ଆସିଗଲେ ସେମାନଙ୍କୁ ଘର ଭିତରେ ଲୁଚି ରହିବାକୁ ପଡ଼ୁଥିଲା । କିନ୍ତୁ ବର୍ତ୍ତମାନ ଆଉ ସେ ଅବସ୍ଥା ନାହିଁ । ଦେଶରୁ ପର୍ଦ୍ଦା ପ୍ରଥା ଉଠିଯାଇଛି ଏବଂ ଶିକ୍ଷା ବାଧ୍ୟତାମୂଳକ ହୋଇଛି; ସୁତରାଂ ବିଦ୍ୟାଳୟମାନଙ୍କରେ ବାଳକ ଓ ବାଳିକା ଉଭୟେ ଏକତ୍ର ଅଧ୍ୟୟନ କରୁଛନ୍ତି ।

"ଆମ ଦେଶରେ ପ୍ରତି ଶୁକ୍ରବାର ଦିନ ବିଦ୍ୟାଳୟ ଛୁଟି ହୁଏ । ଛୁଟି ଦିନ ବାଳକ ଓ ବାଳିକାମାନେ ନାନା କ୍ରୀଡ଼ା କୌତୁକରେ ରତ ହୁଅନ୍ତି । ଘୁଡ଼ି ଉଡ଼ାଇବା ସେମାନଙ୍କର ଗୋଟିଏ ଆମୋଦ-ଜନକ ଖେଳ । କୁକୁଡ଼ା ଲଢ଼େଇ ଓ ମେଣ୍ଢା ଲଢ଼େଇ ପ୍ରଭୃତିରେ



ମଧ୍ଯ ସେମାନେ ଯଥେଷ୍ଟ ଆନନ୍ଦ ଉପଭୋଗ କରନ୍ତି । ଧନୀ ପିଲମାନେ ଘୋଡ଼ା ଚଢ଼ି ବୁଲନ୍ତି । ଦରିଦ୍ର ପିଲଙ୍କ ବାହନ ହେଉଛି ଗଧ ।

"ପୂର୍ବେ ଅମ ପିଲମାନଙ୍କୁ ଆରବୀ ଅକ୍ଷର ଶିକ୍ଷା କରିବାକୁ ପଡ଼ୁଥିଲା । କିନ୍ତୁ ବର୍ତ୍ତମାନ ତା ପରିବର୍ତ୍ତେ ଅମ ଶିକ୍ଷା ଇଂରେଜି ଅକ୍ଷରରେ ହେଉଛି । କେବଳ ସେତିକି ନୁହେଁ; ଅମ ପୋଷାକ ପରିଚ୍ଛଦ ସୁଦ୍ଧା ବଦଳି ଯାଉଛି । କି ପିଲା, କି ବୟସ୍କ ବ୍ୟକ୍ତି ସମସ୍ତେ

ଇଂରେଜ ଢଙ୍ଗରେ ପୋଷାକପତ୍ର ପିନ୍ଧନ୍ତି । ନାରୀମାନେ ଇଂରେଜ ମହିଳାଙ୍କ ଢଙ୍ଗରେ ବେଶଭୂଷା ଧାରଣ କରନ୍ତି । କିନ୍ତୁ ଆମ ଖାଦ୍ୟପେୟ ପୂର୍ବ ପରି ରହିଛି । ଆମେମାନେ ଭାତ, ଡାଲି, ମାଛ, ମାଂସ, ପରିବା ତରକାରି ଆଦି ଆହାର କରୁଁ । ଇଉରୋପୀୟଙ୍କ ପରି ଆମେମାନେ ଭୋଜନ ବେଳେ କଣ୍ଟା ଚାମଚ ବ୍ୟବହାର କରୁଁ ନାହିଁ, ହାତରେ ଖାଉଁ ।"

## ପ୍ରଶ୍ନ

୧ । ତୁରସ୍କ ପିଲାଙ୍କର ଜନ୍ମ ଗ୍ରହଣ କରିବା ସମୟ କଥା ବର୍ଣ୍ଣନା କର ।

୨ । ତୁରସ୍କ ପିଲାମାନଙ୍କ ପୂର୍ବର ଓ ବର୍ତ୍ତମାନ କାଳର ପଠନ ରୀତି ତୁଳନା କର ।

୩ । ତୁରସ୍କ ପିଲାଙ୍କ ପରିଧେୟ ଓ ଖାଦ୍ୟ ବିଷୟରେ ଯାହା ଜାଣ କହ ।

୪ । ନିମ୍ନଲିଖିତ ବାକ୍ୟମାନଙ୍କରେ ଶୂନ୍ୟସ୍ଥାନ ପୂର୍ଣ୍ଣ କର:—

(କ) କ  ପିଲା, — ବୟସ୍କ — ଇଂରେଜ  ରୀତିରେ ପୋଷାକ — ।

(ଖ) ଦରିଦ୍ର ପିଲାଙ୍କ—ହେଉଛି ଗଧ ।

(ଗ) ବାଳକ ଓ ବାଳିକା—ଏକନ୍ଦ ଅଧ୍ୟୟନ କରନ୍ତି ।

(ଘ) ଶିକ୍ଷକଙ୍କର ବସିବା—ଖାଟରେ—ହୋଇଥାଏ ।

୫ । ବେଶଭୂଷା, ଭୋଜନ, ବୟସ୍କ, ରୀତି, ବାହନ, ଶ୍ଳୋକ, ମୁଖସ୍ଥ, ଆମୋଦ, କ୍ରୀଡ଼ା, ଅନୁବାଦ, ଅଭିପ୍ରାୟ— ଲଗାଇ ବାକ୍ୟ ରଚନା କର ।

---

## ମହରମ ପର୍ବ

ଯଦୁ ପିତା ମାତାଙ୍କ ସହିତ କଟକ ସହରରେ ବାସ କରେ । ସେ ଥରେ ବିଦ୍ୟାଳୟର ଅବକାଶ ସମୟରେ ତାଳଚେରରେ ମାମୁ ଘରେ ଯାଇ ରହିଥିଲା ଏବଂ ସେଠାରୁ ଫେରିଲା ଦିନ ମାମୁ ପୁଅ ଭାଇ ଗୋପାଳକୁ ସଙ୍ଗରେ ଧରି ଆସିଲା । ନୂଆହେଁ କଟକ ରେଲ-ଷ୍ଟେସନରେ ଓହ୍ଲାଇ ଦେଖିଲେ ଯେ ଘୋଡ଼ାଗାଡ଼ି ଓ ରିକ୍‌ସା ଅତି ଅଳ୍ପ ଅଛି । ସେ ସବୁର ଭଡ଼ା ମଧ୍ୟ ସାଧାରଣ ଭଡ଼ା ଅପେକ୍ଷା ପ୍ରାୟ ଦେଢ଼ ଗୁଣ, ଦୁଇ ଗୁଣ ଚଢ଼ା ହୋଇଥିବାର ସେମାନେ ଶୁଣିଲେ । ଗୋପାଳ କାରଣ ପଚାରନ୍ତେ, ଶୁଣିଲା, "ଆଜି ପର୍ବ ମହରମ । ଯେତେ ଘୋଡ଼ାଗାଡ଼ି, ରିକ୍‌ସା, ମୋଟର, ସବୁ ଯାତ୍ରୀଙ୍କୁ ଲୋକ ବୋହିବାରେ ଲାଗିଛି । ଆଜି ଦିନଟା ତ ଯାହା ରୋଜଗାର କରିଥିବେ; କାଲିକି କିଏ ଏ ଭଡ଼ା ଆଉ ରହିବ ?"

ତତ୍‌ପରେ ଯଦୁ ଗୋଟିଏ ରିକ୍‌ସା ଭଡ଼ା କରି, ଗୋପାଳକୁ ଧରି, ଘରକୁ ଯିବା ନିମନ୍ତେ ବାହାରିଲା । ସବୁ ଦିନ ତୁଳନାରେ, ସେ ଦିନ ବାଟ ତମାମ ଲୋକଗହଳି ଅତ୍ୟନ୍ତ ଅଧିକ । ସୁତରାଂ ରିକ୍‌ସା ସାଧାରଣତଃ ଯେତେ ବେଗରେ ଯାଏ, ସେପରି ଯାଇ ପାରୁ ନ ଥାଏ । ଛକ ସ୍ଥାନମାନଙ୍କରେ ପୋଲିସ ବାଲା ଠିଆ ହୋଇ, ହାତ ଦେଖାଇ, ଅଟକାଇ ଦେଉଥାଏ । ସେମାନେ ରାଣୀହାଟ ଓ ମଙ୍ଗଳାବାଗ କୌଣସି ପ୍ରକାରେ ଅତିକ୍ରମ କରି ଯାଇ ବକ୍‌ସି ବଜାରରେ ପ୍ରବେଶ କଲେ । ସେଠାରେ ପ୍ରକାଣ୍ଡ ଜନତା ରାସ୍ତା ପୂର୍ଣ୍ଣ କରି ରହିଥିଲା । ସେ ଜନତା ଭେଦ କରି ଅଗ୍ରସର ହେବା ଅସମ୍ଭବ ବୋଧ ହେଲା । ଫଳରେ ସେମାନେ ଫେରି କାଣ୍ଟନ୍‌ମେଣ୍ଟ ସଡ଼କ ବାଟେ ଯିବାକୁ ବାଧ୍ୟ ହେଲେ ।

ଗୋପାଳ 'ମହରମ' ନାମଟା ମାତ୍ର ଶୁଣିଥିଲା; କିନ୍ତୁ ମହରମ ଯାତ୍ରା କେବେ ଦେଖି ନ ଥିଲା କି। ସେ ଯାତ୍ରା କାହିଁକି ହୁଏ, ତାର କାରଣ ଜାଣି ନ ଥିଲା। ସେଥିପାଇଁ ଯଦୁ କହିଲା, "ମହରମ ମୁସଲମାନମାନଙ୍କର ଗୋଟିଏ ପ୍ରଧାନ ପର୍ବ। ଏ ପର୍ବ ମୂଳରେ ଏକ ବଡ଼ ଐତିହାସିକ ଘଟଣା ରହିଛି। ମହାପୁରୁଷ ମହମ୍ମଦ ମୁସଲମାନ ଧର୍ମ ପ୍ରତିଷ୍ଠା କରିଗଲେ। ତାଙ୍କ ଅନ୍ତେ ତାଙ୍କର ଦୁଇ ନାତି ହାସାନ୍ ଓ ହୋସେନ୍‌ଙ୍କ ସଙ୍ଗେ ସିରିଆର ରାଜା ଘୋର ବିବାଦରେ ପ୍ରବୃତ୍ତ ହେଲେ। ଉଭୟପକ୍ଷ ମଧ୍ୟରେ ଯୁଦ୍ଧ ଚାଲିଲା। ସିରିଆର ରାଜା ଗୋପନରେ ବିଷ ପ୍ରୟୋଗ କରାଇ ହାସାନ୍‌ଙ୍କୁ ପ୍ରାଣରେ ମାରିଦେଲେ। ହୋସେନ୍ ଯୁଦ୍ଧରେ ବନ୍ଦୀ ହେଲେ। ରାଜା ତାଙ୍କୁ ବନ୍ଦୀଶାଳାରେ ଖାଦ୍ୟ ପାନୀୟରୁ ବଞ୍ଚିତ କରି ରଖିଲେ। ହୋସେନ୍ ମୃତ୍ୟୁ ବିରୁଦ୍ଧରେ ଦଶ ଦିନକାଳ ଲଢ଼ି ଶେଷରେ ପ୍ରାଣତ୍ୟାଗ କଲେ।"

ଗୋପାଳ ତାହା ଶୁଣିସାରି କହିଲା, "ଓଃ, କି ଘୋର ନୃଶଂସତା! ମହମ୍ମଦ ପୃଥିବୀର ଜଣେ ପ୍ରସିଦ୍ଧ ମହାପୁରୁଷ। ରାଜା ତାଙ୍କ ନାତିଙ୍କୁ ସମ୍ମାନ ଦେଖାଇବା ପରିବର୍ତ୍ତେ ଏପରି ନିଷ୍ଠୁର ଭାବରେ ମାରିପକାଇଲେ! ମହରମ ପର୍ବ ତେବେ କଣ ହୋସେନଙ୍କ ସ୍ମୃତିରକ୍ଷା କରିବା ନିମନ୍ତେ ପାଳିତ ହେଉଛି? ଏ ପର୍ବ କେବଳ ମୁସଲମାନ କାହିଁକି, ହିନ୍ଦୁମାନଙ୍କର ମଧ୍ୟ ପାଳିବା ଉଚିତ। ଖାଲି ମୁସଲମାନ ଧର୍ମ ସହିତ ତ ଏହାର ସମ୍ପର୍କ ନାହିଁ, ଏହା ସମଗ୍ର ମାନବ ଜାତିର ଗୋଟାଏ ଶୋକାବହ ଘଟଣା। ସେଥିପାଇଁ କଟକରେ ଏ ପର୍ବରେ ହିନ୍ଦୁ ଓ ମୁସଲମାନ ଉଭୟ ସଂପ୍ରଦାୟର ଲୋକେ ଯୋଗ ଦେଉଥିବେ। ନୋହିଲେ ରାସ୍ତାରେ ଏତେ ଲୋକ ଗହଳି ଆସନ୍ତା କୁଆଡ଼ୁ ବା ଯାତ୍ରା ଏତେ ଜାକଜମକରେ ହୁଅନ୍ତା କିପରି?"

ସେ ଦିନ ଯଥା ସମୟରେ ଯଦୁ ଓ ଗୋପାଳ ମହରମ ଯାତ୍ରା ଦେଖିବାକୁ ବାହାରିଲେ । ସେମାନେ ଦେଖିଲେ ଯେ ଯାତ୍ରାରେ ହିନ୍ଦୁ ମୁସଲମାନ ଉଭୟେ ଯୋଗ ଦେଇଛନ୍ତି । ଉଭୟ ସମ୍ପ୍ରଦାୟ ସେଥିରେ ସମାନ ଉତ୍ସାହରେ ମାତିଥିଲେ । କେଉଁଠାରେ ମାଲଯୁଦ୍ଧ ହେଉଥିଲା; କେଉଁଠାରେ ଖେଳାଳୀଗଣ ରଣଭୂମିରେ ଲଢ଼ିବା ଭଙ୍ଗୀରେ ଛୁରୀ ଖେଳୁଥିଲେ; କେଉଁଠାରେ ବା କୁସ୍ତି କସରତ ଚାଲିଥିଲା । ବିଭିନ୍ନ ସ୍ଥାନରେ ବାଦ୍ୟ ବାଜୁଥିଲା । ଦୁଇ ପାଖର ଘରମାନଙ୍କ ମଧ୍ୟରେ ସଡ଼କରେ ସତେ ଅବା ଗୋଟାଏ ପ୍ରକାଣ୍ଡ ଜନତା ସ୍ରୋତ ଚାଲିଥିଲା । ସହସ୍ର ସହସ୍ର ଲୋକ ଏକ ଦିଗରୁ ଅପର ଦିଗକୁ ଅଗ୍ରସର ହେଉଥିଲେ । ସେମାନଙ୍କ ଭିତରେ ସ୍ଥାନେ



ସ୍ଥାନେ ଦଳେ ଦଳେ ଲୋକ ନିଜ ନିଜ ଛାତିରେ ହାତ ବାଡ଼େଇ ଉଚ୍ଚ ସ୍ୱରରେ 'ହାସାନ୍ ହୋସେନ୍' ଉଚ୍ଚାରଣ କରିବାରେ ଲାଗିଥିଲେ । ସେ ଦୃଶ୍ୟ ଦେଖିଲେ, ନିତାନ୍ତ କଠୋର ହୃଦୟ ମୁଦ୍ଧା ତରଳିଯିବ । ହାସାନ୍ ଓ ହୋସେନ୍‌ଙ୍କ ଅତ୍ୟନ୍ତ ନିର୍ମମ

ଭାବରେ ହତ୍ୟା କରାଯାଇଥିଲେ; ସେଥିଯୋଗୁଁ ପ୍ରତିବର୍ଷ ତାହା ପାଇଁ ଶୋକ କରାଯାଏ । ଏହା ସେହି ଶୋକରହିଁ ଅଭିବ୍ୟକ୍ତି ।

ମହରମ ପର୍ବର ପ୍ରଧାନ ଦର୍ଶନୀୟ ପଦାର୍ଥ ତାଜିଆ । ତାଜିଆ ହୋସେନଙ୍କ କବରର ସ୍ମୃତିମାତ୍ର । ହୋସେନଙ୍କୁ ଦଶଦିନ କାଳ ଅନାହାରରେ ରଖାଯାଇଥିବାରୁ, ମହରମ ପର୍ବ ପ୍ରକୃତରେ ଦଶଦିନ ପାଳିତ ହୁଏ । ଶେଷ ଦିନ ତାଜିଆ ସହିତ ଯାତ୍ରା କରାଯାଏ । କଟକ ସହରର ବିଭିନ୍ନ ଅଞ୍ଚଳର ଲୋକେ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ତାଜିଆ ତିଆର କରିଥାନ୍ତି । ଯାତ୍ରାରେ ସେସବୁ ତାଜିଆ ଏକାବେଳକେ ବାହାରେ । ତାଜିଆଗୁଡ଼ିକ ମଧ୍ୟରେ ଗୋଟାଏ ପ୍ରତିଯୋଗିତା ଭାବ ରହିଥିବାର ଦେଖାଯାଏ । ପ୍ରତ୍ୟେକ ଅଞ୍ଚଳର ଲୋକେ ନିଜ ତାଜିଆ ନିମନ୍ତେ ଗର୍ବ ଅନୁଭବ କରନ୍ତି । ତାଜିଆ ନିର୍ମାଣ କରିବାରେ ଅନେକ ଅର୍ଥ ବ୍ୟୟ କରାଯାଇଥାଏ । ଅନେକ ତାଜିଆ ଆଗପଛ ହୋଇ ଗ୍ଲୁଲିଥିବା ବେଳର ଦୃଶ୍ୟ ଅତ୍ୟନ୍ତ ମନୋହର । ସମଗ୍ର ଓଡ଼ିଶାରେ କଟକ ସହରରେହିଁ ମହରମ ପର୍ବ ଅତି ଆଡ଼ମ୍ବରରେ ପାଳିତ ହୁଏ । ତାଜିଆଗୁଡ଼ିକୁ ଶେଷରେ ନେଇ ନଦୀରେ ବିସର୍ଜନ ଦିଆଯାଏ । ଦଶ ଦିନର ପର୍ବ ସେତିକିରେ ଶେଷ ହୁଏ ।

## ପ୍ରଶ୍ନ

୧ । ତାଜିଆ କଣ ?

୨ । ମହରମ ପର୍ବ କାହିଁକି ପାଳିତ ହୁଏ ?

୩ । କଟକର ମହରମ ଯାତ୍ରା ବର୍ଣ୍ଣନା କର ।

୪ । ନିର୍ମାଣ, ସ୍ୱତନ୍ତ୍ର, ଅନାହାର, ଅନୁଭବ, ନିର୍ମମ, ନିଷ୍ଠୁର, ନୃଶଂସ, ପ୍ରବୃତ୍ତି, ଜନତା, ସମ୍ପ୍ରଦାୟ, ବଞ୍ଚିତ, ବାଦ୍ଧିକ, ପ୍ରୟୋଗ—ଲଗାଇ ବାକ୍ୟ ରଚନା କର ।

୫ । ମୃଦୁ, କଠୋର, ପ୍ରସିଦ୍ଧ, ଗୋପନ, ଅସମ୍ଭବ, ଉନ୍ନତି— ଏ ଗୁଡ଼ିକର ବିପରୀତ ଅର୍ଥବୋଧକ ଶବ୍ଦ କହ ।

୬ । ଦେଖିବା ଯୋଗ୍ୟ, ଇତିହାସରେ ଯାହା ଲେଖା ଅଛି, ଆହାର ନ ପାଇବା ଅବସ୍ଥାରେ, ବାହାରକୁ ଯାହା ଦିଶେ—ପ୍ରତ୍ୟେକ ନିମନ୍ତେ ଏ ପାଠରେ କି କି ଶବ୍ଦ ବ୍ୟବହୃତ ହୋଇଛି ?

---

## ନୋବେଲ ପୁରସ୍କାର

୧୯୧୩ ମସିହାରେ, ଭାରତର ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କୁ ପୃଥିବୀର ସମସ୍ତ ଅଞ୍ଚଳରୁ, ଅଭିବାଦନ ମିଳିଥିଲା । ସତର ବର୍ଷ ପରେ, ୧୯୩୦ ମସିହାରେ, ପୁଣି ସେହିପରି ଅଭିବାଦନ ମିଳିଲା ଚନ୍ଦ୍ରଶେଖର ଭେଙ୍କଟ ରମଣଙ୍କୁ । ରବୀନ୍ଦ୍ରନାଥ ଥିଲେ କବି, ଚନ୍ଦ୍ରଶେଖର ବୈଜ୍ଞାନିକ । ରବୀନ୍ଦ୍ରନାଥ ନିଜ ରଚିତ 'ଗୀତାଞ୍ଜଳି' ପୁସ୍ତକରେ ଉତ୍କୃଷ୍ଟ କବିତାମାନ ଲେଖିଥିଲେ । ଚନ୍ଦ୍ରଶେଖର ପଦାର୍ଥ ବିଜ୍ଞାନରେ ଗୋଟିଏ ଗୂଢ଼ ତଥ୍ୟ ଆବିଷ୍କାର କରିଥିଲେ । ଉଭୟଙ୍କ ଦ୍ୱାରା ପୃଥିବୀର ଜ୍ଞାନଭଣ୍ଡାର ବିଭିନ୍ନ ଦଗରେ ବିଭବଶାଳୀ ହେଲା । ଉଭୟଙ୍କୁ ପୃଥିବୀ ଅଭିବାଦନ କରିବାର କାରଣ, ସେମାନଙ୍କର ନୋବେଲ ପୁରସ୍କାର ଲାଭ କରିବା ।

ପ୍ରତ୍ୟେକ ନୋବେଲ ପୁରସ୍କାରର ପରିମାଣ ଆଠ ହଜାର ପାଉଣ୍ଡ । ପୂର୍ବେ ଭାରତର ମୁଦ୍ରାରେ ତାର ମୂଲ୍ୟ ଥିଲା ଏକ ଲକ୍ଷ ଚୋଡ଼ିଏ ହଜାର ଟଙ୍କା, ବର୍ତ୍ତମାନ ପ୍ରାୟ ଏକ ଲକ୍ଷ ସାତ ହଜାର ଟଙ୍କା ଅଟେ । ପ୍ରତି ବର୍ଷ ଏହିପରି ପାଞ୍ଚଗୋଟି ପୁରସ୍କାର ଦିଆଯାଏ । ତାର ମୋଟ ପରିମାଣ ଭାରତୀୟ ମୁଦ୍ରାରେ ପ୍ରାୟ ସାଢ଼େ ପାଞ୍ଚ ଲକ୍ଷ ଟଙ୍କା ହେବ । ପୁରସ୍କାର ଦେବାରେ ବାର୍ଷିକ ଏହି ଟଙ୍କା ବ୍ୟୟ

କରିବା ନିମନ୍ତେ ବ୍ୟାଙ୍କରେ ପ୍ରଚୁର ଅର୍ଥ ଗଚ୍ଛିତ ରହିଛି । ଏ ଟଙ୍କା ଗଚ୍ଛିତ ପାଣ୍ଠିରୁ ବ୍ୟୟିତ ହୁଏ ନାହିଁ, ତାର ବାର୍ଷିକ ସୁଧରୁ ହୋଇଥାଏ । ସେଥିପାଇଁ ବ୍ୟାଙ୍କରେ ପ୍ରାୟ ଦୁଇ କୋଟି ଟଙ୍କା ମୂଳଧନରୂପେ ଗଚ୍ଛିତ ରଖାଯାଇଛି ।

ପ୍ରତି ବର୍ଷ ପାଞ୍ଚ ଗୋଟି ପୁରସ୍କାର ପାଞ୍ଚ ଗୋଟି ବିଭିନ୍ନ ବିଷୟରେ ଦିଆଯାଏ । ସେ ବିଷୟଗୁଡ଼ିକ ହେଉଛି ସାହିତ୍ୟ, ଶରୀରତତ୍ତ୍ୱ, ପଦାର୍ଥ ବିଜ୍ଞାନ, ରସାୟନ ଶାସ୍ତ୍ର ଓ ଶାନ୍ତି ପ୍ରତିଷ୍ଠା । ଏହି ପାଞ୍ଚଗୋଟି ବିଷୟରୁ ପ୍ରତ୍ୟେକଟିରେ, ବର୍ଷକ ମଧ୍ୟରେ ଲିଖିତ ସର୍ବୋତ୍କୃଷ୍ଟ ଗ୍ରନ୍ଥ ଉପରେ, ପୁରସ୍କାର ଦିଆଯାଇ ଥାଏ । ପୃଥିବୀର ଯେ କୌଣସି ଦେଶର ଯେ କୌଣସି ଭାଷାରେ ଲିଖିତ ଗ୍ରନ୍ଥ ପୁରସ୍କାର ପାଇଁ ପ୍ରତିଯୋଗିତା କରିପାରେ । ଗ୍ରନ୍ଥରୁ ଅସାଧାରଣ ପାଣ୍ଡିତ୍ୟର ପରିଚୟ ମିଳିଲେ, ପୁରସ୍କାର ଘୋଷଣା କରାଯାଏ । ଯେଉଁ ବର୍ଷ କୌଣସି ବିଷୟରେ ସେପରି ପାଣ୍ଡିତ୍ୟପୂର୍ଣ୍ଣ ଗ୍ରନ୍ଥ ନ ଥାଏ, ସେ ବିଷୟର ପୁରସ୍କାର ଦିଆ ହୁଏ ନାହିଁ ।

ପୁରସ୍କାରର ନାମ 'ନୋବେଲ ପୁରସ୍କାର' ହେବାର କାରଣ ଅଛି । ଆଲ୍‌ଫ୍ରେଡ୍ ବର୍ଣ୍ଣାର୍ଡ ନୋବେଲ ନାମକ ଜଣେ ବିଜ୍ଞାନବେତ୍ତା ଏହି ବାର୍ଷିକ ପୁରସ୍କାର ନିମନ୍ତେ ବ୍ୟାଙ୍କରେ ଟଙ୍କା ଗଚ୍ଛିତ କରିଦେଇ ଯାଇଛନ୍ତି । ୧୮୯୬ ମସିହାରେ ସେ ମାନବଲୀଳା ସମ୍ବରଣ କଲେ । ତା ପୂର୍ବ ବର୍ଷ ସେ ଏଥି ସକାଶେ ଆବଶ୍ୟକ ଅର୍ଥ ଦାନ କରି ଏହାର ସୁବ୍ୟବସ୍ଥା କରି ଦେଇଯାଇଥିଲେ । ଗ୍ରନ୍ଥମାନଙ୍କର ଉପାଦେୟତା ବିବେଚନା କରିବା ସକାଶେ ଗୋଟିଏ ପଣ୍ଡିତ ସଂଘ ଉପରେ ଭାର ନ୍ୟସ୍ତ ଅଛି । ସେହି ସଂଘ, ପୃଥିବୀର ସକଳ ଅଞ୍ଚଳରୁ ଉତ୍କୃଷ୍ଟ ଗ୍ରନ୍ଥମାନ ସଂଗ୍ରହ କରି, ତା ମଧ୍ୟରୁ ସର୍ବୋତ୍କୃଷ୍ଟ ପାଞ୍ଚଗୋଟି ଗ୍ରନ୍ଥ ବାଛି, ପୁରସ୍କାର ଘୋଷଣା କରନ୍ତି ।

ଅଲଫ୍ରେଡ୍ ପ୍ରଥମେ ଧନାଢ଼୍ୟ ବ୍ୟକ୍ତି ନ ଥିଲେ । ସେ ୧୮୩୩ ମସିହାରେ ସୁଇଡେନ୍ ରାଜ୍ୟରେ ଜଣେ ସାମାନ୍ୟ ଇଞ୍ଜିନିୟରଙ୍କ ଔରସରେ ଜନ୍ମିଥିଲେ । ତାଙ୍କ ଜ୍ଞାନପିପାସା ଦେଖି, ପିତା ତାଙ୍କୁ ସତର ବର୍ଷ ବୟସରେ, ଆମେରିକାର ଯୁକ୍ତରାଜ୍ୟକୁ ଉଚ୍ଚ ଶିକ୍ଷା



ନିମନ୍ତେ ପ୍ରେରଣ କଲେ । ସେ ଯୁକ୍ତରାଜ୍ୟରେ ରସାୟନ ଶାସ୍ତ୍ର ଓ ପଦାର୍ଥ ବିଜ୍ଞାନ ଉପରେ ଅଧିକ ଧ୍ୟାନ ଦେଲେ । 'ଡିନାମାଇଟ୍' ପୃଥିବୀର ପ୍ରଗତିରେ ବହୁତ ସାହାଯ୍ୟ କରିଛି । ତାହା ଅଲଫ୍ରେଡଙ୍କ ଦ୍ୱାରା ଉଦ୍ଭାବିତ ହୋଇଅଛି । ତାହା ଉଦ୍ଭାବନ କରିବା ସକାଶେ ତାଙ୍କୁ ବହୁଶ୍ରମ ଓ ଅର୍ଥବ୍ୟୟ କରିବାକୁ ପଡ଼ିଥିଲା । ଆଜି ଡିନାମାଇଟ ପୃଥିବୀର ସର୍ବତ୍ର ବ୍ୟବହୃତ ହେଉଛି । କିନ୍ତୁ ପ୍ରଥମ ଡିନାମାଇଟ କାରଖାନା ବସାଇବାର ସୁବିଧା ସେ କୌଣସି ବଡ଼ ରାଜ୍ୟରେ ପାଇଲେ ନାହିଁ । ତାହା କ୍ଷୁଦ୍ର କାଲିଫର୍ନିଆ ରାଜ୍ୟରେ ସ୍ଥାପିତ ହେଲା ।

ପରେ କେତେକ ବର୍ଷ ମଧ୍ୟରେ ପୃଥିବୀର ଅନେକ ଦେଶ ତାହା ଗ୍ରହଣ କରିନେଲେ ।

ଅଲ୍‌ଫ୍ରେଡ୍ ବର୍ଣ୍ଣାର୍ଡ ନୋବେଲ୍ ଡିନାମାଇଟ ବ୍ୟବସାୟରେ ପ୍ରଚୁର ଅର୍ଥ ଉପାର୍ଜନ କଲେ । ତହୁଁ ସେ ମନକୁ ମନ କହିଲେ, "ଏ ଅର୍ଥକୁ କୌଣସି ମହତ୍ କାର୍ଯ୍ୟରେ ଲଗାଇବାକୁ ହେବ । ପୃଥିବୀର କମିକ ଉନ୍ନତିରେ ସାହାଯ୍ୟ କରିବା ଭଳି ବିଷୟରେ ଏହା ବ୍ୟୟ କଲେ, ମୋ ଉପାର୍ଜନ ସାର୍ଥକ ହେବ । ପୃଥିବୀର ଉନ୍ନତି ନିମନ୍ତେ ବିଜ୍ଞାନ ଚର୍ଚ୍ଚା ଅବଶ୍ୟ ଦରକାର । କିନ୍ତୁ ଜ୍ଞାନର ବିକାଶ ଲାଗି ସାହିତ୍ୟ ଓ ମାନବର କଲ୍ୟାଣ ନିମନ୍ତେ ଶାନ୍ତି ମଧ୍ୟ ଆବଶ୍ୟକ ।"

## ପ୍ରଶ୍ନ

୧ । ନୋବେଲଙ୍କ ସଂକ୍ଷିପ୍ତ ଜୀବନୀ ଲେଖ ।

୨ । ନୋବେଲ୍ ପୁରସ୍କାର ଦେବାର ଉଦ୍ଦେଶ୍ୟ କଣ ?

୩ । ନୋବେଲ୍ ପୁରସ୍କାର ପାଇଥିବା ଦୁଇ ଜଣଙ୍କ ନାମ କହ ଓ ପରିଚୟ ଦିଅ ।

୪ । ନିମ୍ନଲିଖିତ ଶବ୍ଦଗୁଡ଼ିକର ଅର୍ଥ କହ :— ବିଶ୍ୱକବି, ଅଭିବାଦନ, ଆବିଷ୍କାର, ବିଭବଶାଳୀ, ଧନାଢ୍ୟ, ମୂଳଧନ, ସର୍ବୋତ୍କୃଷ୍ଟ, ଉଚ୍ଚଶିକ୍ଷା, ଜ୍ଞାନପିପାସା ।

୫ । ପୁରସ୍କାର, ଗୂଢ଼, ଆବିଷ୍କାର, ନ୍ୟସ୍ତ, ସଂଘ, ମାନବଲୀଳା, ଗଚ୍ଛିତ, ଘୋଷଣା, ପ୍ରତିଷ୍ଠା, ବାର୍ଷିକ, ଭଣ୍ଡାର—ଲଗାଇ ବାକ୍ୟ ରଚନା କର ।

---

## ଆଳସ୍ୟ ଯେ କରେ

ଗ୍ରାମ ମଝି ଦାଣ୍ଡେ ପଡ଼ି ରହିଛି ପଥର,
କେତେ କାଳୁ ପଡ଼ିଲଣି, ଲୋକେ ଅଗୋଚର;
ସର୍ବେ ଦେଖନ୍ତି ନୟନେ,
ଘୁଞ୍ଚାଇ ଦେବାକୁ ହାତ ନ ବଢ଼ାଏ ଜଣେ ।

କେତେକ ତ କାହାର କ୍ଷତ ଘଟିଯାଏ ତହିଁ,
କେ ଝୁଣ୍ଟେ, ବା ଅଣ୍ଟୁ କାର ସହଜେ ଭାଙ୍ଗଇ,
କେହୁ ପଡ଼େ ଡେଇଁ ଡେଇଁ,
ବ୍ୟଥା କାର ମାସକରେ ନ ଛାଡ଼ଇ ଦେହୁ ।

ଗ୍ରାମ ଶିରପଞ୍ଚ ଥରେ ଯାଅନ୍ତେ ଶଗଡ଼େ,
ତାଇ କନା ହାବୁଡ଼ିଲା ଚକ ତା ପଥରେ;
ଗାଡ଼ି ପଡ଼ିଲା ଲେଉଟି,
ଛ ମାସ ଖୀପଟେ ଶେଯୁଁ ନ ପାରିଲେ ଉଠି ।

ଗ୍ରାମ ବିଦ୍ୟାଳୟ ଗୁରୁ, ଧରି ବେତ ହାତେ,
ଗୋଡ଼ାଇଲେ ପିଟିବାକୁ ବଗି ଦୁଷ୍ଟ ଛାତ୍ରେ;
ବାଟେ ଡେଇଁ ଗଲା ପିଲା,
ଗୁରୁଙ୍କର ଗୋଡ଼ ବାଜି ପଥରେ ଭାଙ୍ଗିଲା ।

ନୈଷ୍ଠିକ ବ୍ରାହ୍ମଣ ତୁଣ୍ଡେ ବେଦ ମନ୍ତ୍ର ପଢ଼ି,
ଝୁଲନ୍ତେ, ପଥରୁ ଉଳେ ପଡ଼ିଗଲେ ଗଡ଼ି;
କାନ୍ଧେ ଛିଣ୍ଡିଲା ପଇତା,
ମାସେ ପକ୍ଷେ ଅନ୍ନ ତାଙ୍କୁ ହୋଇଗଲା ପିତା ।

ଏହିପରି କେତେ ବାର କ୍ଷତ ହେଲା ଅନିଷ୍ଟ;
କେ କହେ, "ମୋ କର୍ମ," କେଏ କହେ, "ଥିଲା ରିଷ୍ଟ;"
ହାତ ଗଲା ନାହିଁ କାର,
ପଥରଟା କାଢ଼ି ପଥୁଁ ଖଣ୍ଡିବ ଜଞ୍ଜାଳ ।

ଅସିଲେ ସେ ଗ୍ରାମେ କେତେ ଡାକ୍ତର, ଡେପୁଟି,
ବାଟ ଭାଙ୍ଗି କେ ଗୁଳିଲେ, କେବା ଗଲେ ଫୁଣ୍ଟି;
କେହି ନ ଦେଲେ ମନ୍ତ୍ରଣା,
"କାଢ଼ ଏ ପଥର, ବୃଥା ଭୋଗୁଛ ଯାତନା ।"

ବାହାରିଲା କେତେ କାଳେ ଯୁବା ଏକ ଗ୍ରାମେ,
ଦୁଃଖୀ ସେହୁ, ମୂର୍ଖ ସେହୁ, ନର ଏକା ନାମେ;
ବଳ କି ବାହୁର ତହେଁ,
ପଥରଟା ଟଙ୍କାଇଲା ସାରା ଗ୍ରାମ ହିତେ ।

ଗଡ଼ାଇ ତାକୁ ସେ ଦେଲା ବାଟ ମଧ୍ୟୁଁ ପେଲି,
ଟକ ଟକ ଦଶେ କସ, ନିରେଖିଲା ଫେରି;
ହାତେ ଧରିଲା ଗୋଠାଇ,
ସେ ଯେ ସୁନା ଇଟା ଖଣ୍ଡେ, ଚଳିଲା ସେ ଗୃହିଁ ।

ଦୁଃଖ ତା ଘୁଞ୍ଚିଲା, ମୂର୍ଖ ଦୋଷ ଗଲା କଟି,
କେତେ ପୁରସ୍କାର ନେଲା ଦଣ୍ଡେ ମାତ୍ର ଖଟି;
ବୃଥା ଯାଏ ନାହିଁ ଶ୍ରମ,
ଅଳସ୍ୟ ଯେ କରେ ତାର କପାଳ ବିଷମ ।

## ପ୍ରଶ୍ନ

୧ । ପଥର ଯୋଗେ କି କି କ୍ଷତ ହେଉଥିଲା ?

୨ । ପଥର ଘୁଞ୍ଚାଇବାରେ କି ଫଳ ଫଳିଲା ?
୩ । ପଦ୍ୟର ସାରାଂଶ ତୁମ ନିଜ ଭାଷାରେ କହ ।
୪ । ଅଗୋଚର, ଝଂକୃତି, ବ୍ୟଥା, ଦୁଷ୍ଟ, ନୈଷ୍ଠିକ, ପିତା, ମନ୍ତ୍ର, ଅନିଷ୍ଟ, ଇଷ୍ଟ, ଜଞ୍ଜାଳ, ମନ୍ତ୍ରଣା, ଚଢ଼ିଲ, ପୁରସ୍କାର, ଆଳସ୍ୟ—ଲଗାଇ ବାକ୍ୟ ରଚନା କର ।
୫ । ଏ ପାଠରେ ଥିବା କ୍ରିୟା ପଦଗୁଡ଼ିକ ବାଛି ଦେଖାଅ ।

---

## ରେଡିଓ

ମୁଁ ଛୁଟିରେ ଦିନେ ବ୍ରହ୍ମପୁର ଯାଇ, ଜଣେ ବନ୍ଧୁଙ୍କ ଘରେ ରହି, ସନ୍ଧ୍ୟାରେ ଖାଇ ପିଇ, ଏକାକୀ ଗୋଟିଏ କୋଠରୀରେ ଶୋଇଲି । ମୁଁ ପଥଶ୍ରାନ୍ତ ହୋଇଥିବା ଯୋଗେ, ଶୋଇ ଶୋଇ ମୋତେ ଶୀଘ୍ର ନିଦ ଲାଗିଗଲା । କେତେକ ସମୟ ପରେ, ସ୍ୱପ୍ନରେ ଶୁଣିଲା ପରି, ସଙ୍ଗୀତ ଧ୍ୱନିରେ ମୁଁ ଚମକିପଡ଼ି, ଶେଯରୁ ଉଠି, ଠିଆ ହେଲି । ମୁଁ ଚାହିଁ ଦେଖିଲି ଯେ ସେହି କୋଠରୀରେ ଥିବା ଗୋଟିଏ ବାକ୍ସରୁ ଆଲୋକ ଓ ସଙ୍ଗୀତ ଲହରୀ ଉଭୟ ଏକ ସଙ୍ଗେ ଆସୁଛି । ସେପରି ଅନୁଭୂତି ପୂର୍ବରୁ ମୋର




କଦାପି ହୋଇ ନ ଥିଲା । ମୁଁ ହଠାତ୍ ସେହି କୋଠରୀରୁ ଭୟରେ ପଳାଇ ବନ୍ଧୁଙ୍କ ନିକଟରେ ପହଞ୍ଚିଲି । ସେ ବୋଧହୁଏ ମୋତେ ଦେଖିବାମାତ୍ରେ ବିଷୟଟା ବୁଝିନେଲେ । ତହୁଁ ସେ ସଙ୍ଗେ ସଙ୍ଗେ

କହିଲେ, "କିରେ ତୁ କଣ ଡରିଲୁ କି ? ସେଟା ଭୂତ ପ୍ରେତ କିଛି ନୁହେ ମ । ସନ୍ଧ୍ୟା ସାଢ଼େ ନଅଟାରେ କଟକରେ ସୁନନ୍ଦା ପଟ୍ଟନାୟକଙ୍କର ପଲ୍ଲୀଗୀତ ଥିଲା ନା । ତୁ ତ ଶୋଇପଡ଼ିଲୁ; ସେହି ଗୀତଟି ଶୁଣିବାକୁ ମୁଁ ରେଡ଼ିଓଟା ଚଳାଇ ଦେଇ, ଅସି ଏଠେଇ ବସିଯାଇଚି ପରା । ଶୁଣ୍ , କେଡ଼େ ସୁନ୍ଦର ଗୀତ ! "

ମୁଁ ବନ୍ଧୁଙ୍କ ପାଖେ ବସି ଗୀତ ଶୁଣିଲି । ବ୍ରହ୍ମପୁରରୁ କଟକର ଦୂରତା ପ୍ରାୟ ଷାଠିଏ କୋଶ । ଗୀତ କଟକରେ ହେଉଥିଲା; କିନ୍ତୁ ମନେ ହେଉଥିଲା ସତେ ଅବା ଗାୟିକା ମୋ ଶୋଇବା କୋଠରୀରେ ବସି ଗାଉଛନ୍ତି । ଗୀତ ବନ୍ଦ ହେଲା ପରେ, ବନ୍ଧୁ ମୋତେ ନେଇ ରେଡ଼ିଓ ଯନ୍ତ୍ରଟି ଦେଖାଇ, ତା ବିଷୟରେ ନାନା ତଥ୍ୟ କହିଲେ । ମୁଁ ଅବଶ୍ୟ ସବୁ କଥା ସମ୍ପୂର୍ଣ୍ଣରୂପେ ବୁଝିପାରିଲି ନାହିଁ । କିନ୍ତୁ ମୁଁ ଯେତିକି ବୁଝିଲି, ସେଥିରେ ମୁଁ ମନେ ମନେ ଅତ୍ୟନ୍ତ ବିସ୍ମିତ ହୋଇପଡ଼ିଲି । ଷାଠିଏ କୋଶ ଦୂରର ଗୀତ କାନ ପାଖେ ଅସି ଶୁଭିଲେ, କାହା ମନରେ ଆଶ୍ଚର୍ଯ୍ୟ ଜାତ ନ ହେବ ?

ନ ହେବା ବିଷୟ ବିଜ୍ଞାନ ବଳରେ ସମ୍ଭବ ହୁଏ । ଏପରି ଅଦ୍ଭୁତ କଥା ଯେ ଘଟିପାରେ, ପଚାଶ ବର୍ଷ ପୂର୍ବେ, କେହି କଣ ସ୍ୱପ୍ନରେ ଭାବିଥିଲେ ? ଇଟାଲୀ ଦେଶର 'ମାର୍କୋନି' ନାମକ ଜଣେ ବିଜ୍ଞାନବିତ୍ ପ୍ରଥମେ ରେଡ଼ିଓ ଉଦ୍‌ଭାବନ କଲେ । ସେ ଯେ ଏଡ଼େ ବଡ଼ ଗୋଟିଏ କାର୍ଯ୍ୟ କରିବାକୁ ସମର୍ଥ ହେଲେ, ସେଥିପାଇଁ ତାଙ୍କୁ କୋଟି କୋଟି ଧନ୍ୟବାଦ । ରେଡ଼ିଓ ଯନ୍ତ୍ର ସାହାଯ୍ୟରେ ଅଜି ସୁଦୂର ଇଂଲଣ୍ଡ ଓ ଅମେରିକାର ସମ୍ବାଦ ପଲକ ମଧ୍ୟରେ ଭାରତରେ ଅସି ପହଞ୍ଚିତା ହେଉଛି । ସେହିପରି ଭାରତର ଘଟଣାବଳୀ ସଙ୍ଗେ ସଙ୍ଗେ ପୃଥିବୀର ପ୍ରତ୍ୟେକ ଦେଶକୁ ଚାଲିଯାଉଛି । ଦେଶ ଦେଶ ମଧ୍ୟରେ ଯେଉଁ ଦୂରତା ରହିଥିଲା, ତାହା ଅଉ ନାହିଁ ।

ଦେଶ ଦେଶ ମଧ୍ୟରେ ଦୂରତା ରହିଥିବା ଯୋଗେ ମାନବ ଜାତିର ଉନ୍ନତିରେ ବାଧା ପଡ଼ୁଥିଲା । ଏକ ଦେଶର ଲୋକେ ଅନ୍ୟ



ଦେଶର ଲୋକଙ୍କ ବିଷୟ ଜାଣି ନ ଥିଲେ । ସୁତରାଂ ଉଭୟ ଦେଶ ଭିତରେ ପରସ୍ପର ପ୍ରତି ସନ୍ଦେହ ଓ ଅବିଶ୍ୱାସ ଜନ୍ମୁଥିଲା । ସେଥିରୁ ଶତ୍ରୁତା ଜାତ ହେଉଥିଲା । ଶତ୍ରୁତା ଫଳରେ ସାମୟିକ ଯୁଦ୍ଧ ଲାଗୁଥିଲା । ଯୁଦ୍ଧରେ ଅସଂଖ୍ୟ ଲୋକ ଯେପରି ପ୍ରାଣ ହରାଉ-ଥିଲେ, ଅପର୍ଯ୍ୟାପ୍ତ ଅର୍ଥ ମଧ୍ୟ ସେହିପରି ନଷ୍ଟ ହେଉଥିଲା । ସେଥିରେ ପୃଥିବୀର ଯେ କି ଘୋର କ୍ଷତି ଘଟୁଥିଲା, ତାହା କଳନା କରିବା ଅସମ୍ଭବ । ବିଶ୍ୱକର୍ମୀ ମାର୍କୋନି ପୃଥିବୀକୁ ଏହି କ୍ଷତିରୁ ରକ୍ଷା କରିଛନ୍ତି ।

ସେ କି ସହଜ ଉପାୟରେ ରେଡିଓ ଯନ୍ତ୍ର ଉଦ୍‌ଭାବନ କଲେ, ତାହା ଶୁଣିଲେ, ତାଙ୍କ ବୁଦ୍ଧିର ପ୍ରଶଂସା ନ କରି ରହି ହେବ ନାହିଁ । ଆମେ କଥା କହିବା ବେଳେ ପାଟିରୁ ଯେଉଁ ଶବ୍ଦ ବାହାରେ, ତାହା ବାୟୁରେ ଗୋଟାଏ ତରଙ୍ଗ ସୃଷ୍ଟି କରେ । ସେହି ଅଦୃଶ୍ୟ ତରଙ୍ଗ ପାଣିର ଲହରି ପରି କ୍ରମଶଃ ଚତୁର୍ଦ୍ଦିଗକୁ ଗତି କରେ । ତାହା ଯାଇ ଅନ୍ୟ ଜଣକର କର୍ଣ୍ଣକୁହର ସ୍ପର୍ଶ କଲେ, ତାକୁ କଥାଟା ଶୁଣାଯାଏ । ଏହି ତଥ୍ୟ ଲକ୍ଷ୍ୟ କରି ମାର୍କୋନି ରେଡିଓ ଉଦ୍ଭାବନ କରିଛନ୍ତି ।

ଶବ୍ଦ ଯେ ବାୟୁରେ ତରଙ୍ଗ ଖେଳାଇ ଗତି କରେ, ତାର ବେଗ ଅଧିକ ନୁହେଁ । ବାୟୁ ,ସେହି ଗତିରେ ପ୍ରତି ମୁହୂର୍ତ୍ତିରେ ବାଧା ଦେଇ, ତା ବେଗ ରୋଧ କରେ । ପୃଥିବୀ ପୃଷ୍ଠରେ ବାୟୁ ଯେପରି ଅଦୃଶ୍ୟ ଭାବରେ ଅଛି, ଇଥର୍ ମଧ୍ୟ ସେହିପରି ରହିଛି । ମାର୍କୋନି ଯନ୍ତ୍ର ସାହାଯ୍ୟରେ ଶବ୍ଦକୁ ନେଇ ଇଥର୍ ମଧ୍ୟରେ ଛାଡ଼ିଦେଲେ । ଶବ୍ଦଟି ସେହି ଇଥର୍‌ରେ ତରଙ୍ଗ ଖେଳାଇ ବିନା ବାଧାରେ ଚାଲିଲା । ଫଳରେ ଏକ ସ୍ଥାନରେ ଶବ୍ଦ ହେବାମାତ୍ରେ, ସେହି ମୁହୂର୍ତ୍ତିରେ ତାହା ଦୂରରେ ଯାଇ ପହଞ୍ଚିଲା ଏବଂ ସେଠାରେ ଥିବା ରେଡିଓ ଯନ୍ତ୍ରରେ ପ୍ରବେଶ କରି,ବାହାରକୁ ବାହାରିଲା । ସେତେବେଳେ ତାହା ବାୟୁରେ ତରଙ୍ଗ ଖେଳାଇ, ଶ୍ରୋତାମାନଙ୍କ କର୍ଣ୍ଣକୁହର ସ୍ପର୍ଶ କଲା । ବର୍ତ୍ତମାନ ପୃଥିବୀରେ ଯେଉଁ କୋଟି କୋଟି ରେଡିଓ ଯନ୍ତ୍ର ରହିଛି, ଏହି ମୂଳ ମନ୍ତ୍ରରେ ସେ ସବୁ ଚାଲୁଛି ।

## ପ୍ରଶ୍ନ

୧ । ରେଡିଓ ଯୋଗେ ପୃଥିବୀରେ କି ଉପକାର ହୋଇଛି ?

୨ । ଦେଶ ଦେଶ ମଧ୍ୟରେ ଯେଉଁ ଦୂରତା ରହିଥିଲା, ତାହା ଆଜି ନାହିଁ—ଏହାର ମର୍ମ କଣ ?

୩ । ରେଡିଓ ଯନ୍ତ୍ରର ମୂଳ ମନ୍ତ୍ର କଣ ?

୪ । ମୂଳ ମନ୍ତ୍ର, କର୍ଣ୍ଣକୁହର, ବିନା, ପଥଶ୍ରାନ୍ତ, ଗାୟିକା, ଅଦ୍ଭୁତ, ପଲକ, ଘଟଣାବଳୀ, କ୍ରମଶଃ, ଉଦ୍ଭାବନ, ଅଷ୍ଟ୍ରେଲିଆ, ବିସ୍ମିତ—ଲଗାଇ ବାକ୍ୟ ରଚନା କର ।

୫ । ନିମ୍ନଲିଖିତ ଶବ୍ଦମାନଙ୍କ ପରିବର୍ତ୍ତେ ଏ ପାଠରେ ଯେଉଁ ସାଧୁ ଶବ୍ଦଗୁଡ଼ିକ ବ୍ୟବହୃତ ହୋଇଛି ସେଗୁଡ଼ିକ ବାଛି ଦେଖାଅ :— ଛୁଇଁଲା, କାନଗିର, ତେଜ୍, ପାରିଲେ, ଏକୁଟିଆ, ବାଟ ଚାଲିବା ଯୋଗେ ହାଲିଆ, ପୁରାପୂର ।

## ଯମ ଓ ମନୁଷ୍ୟ

ଗୋବିନ୍ଦପୁର ଗ୍ରାମରେ ଶତାଧିକ ଗୃହ । ସେଥିରେ ଛ ଶହ ପର୍ଯ୍ୟନ୍ତ ଲୋକ ବାସ କରନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶ ଦରିଦ୍ର; ପ୍ରତ୍ୟହ ପରିଶ୍ରମ କରି ଯାହା ଉପାର୍ଜନ କରନ୍ତି, ସେଥିରେହିଁ ଜୀବିକା ନିର୍ବାହ କରିଥାନ୍ତି । କେବଳ ଗୃହ ପାଞ୍ଚ ଗୋଟି ପରିବାରକୁ ସଙ୍ଗତିସମ୍ପନ୍ନ ବୋଲିଯାଇ ପାରେ । ଅବଶିଷ୍ଟ ଲୋକେ ମଧ୍ୟବିତ୍ତ ଶ୍ରେଣୀର ଅନ୍ତର୍ଗତ । ମଧ୍ୟବିତ୍ତ ଶ୍ରେଣୀର କେତେ ଜଣ ବିଦ୍ୟା ଉପାର୍ଜନ କରି ତାହାରି ବଳରେ ଗ୍ରାମ ମଧ୍ୟରେ ପ୍ରତିଷ୍ଠା ଲାଭ କରିଥିଲେ । ରାମଚନ୍ଦ୍ର ମହାପାତ୍ର ସେମାନଙ୍କ ମଧ୍ୟରୁ ଜଣେ ।

ଥରେ ଗୋବିନ୍ଦପୁରରେ ବିସୂଚିକା ସଂକ୍ରାମକ ହୋଇ ଉଠିଲା । ଗ୍ରାମଟି ନଦୀ କୂଳରେ ଅବସ୍ଥିତ । ରୋଗର ଜୀବାଣୁ ଜଳ ସ୍ରୋତରେ ଭାସିଆସି ସେଠାରେ ବିସୂଚିକା ଘଟାଇଲା । ଗ୍ରାମର ଲୋକେ ନଦୀରେ ସ୍ନାନାଦି କରନ୍ତି । ଦରିଦ୍ର ଲୋକମାନେ ନଦୀ ପାଣିହିଁ ପିଇଥାନ୍ତି । ସଙ୍ଗତିସମ୍ପନ୍ନ ଅଧିବାସୀଙ୍କର ନିଜ ନିଜର କୂଅ ଥାଏ । ମଧ୍ୟବିତ୍ତ ଶ୍ରେଣୀର ଲୋକେ ସେହି କୂଅ ସବୁରୁ ପାଣି ନେଇ ପିଇବା କାର୍ଯ୍ୟରେ ଲଗାନ୍ତି । ଗ୍ରାମରେ ବିସୂଚିକା ହେବାରୁ ସଙ୍ଗତିସମ୍ପନ୍ନ ବ୍ୟକ୍ତିମାନେ ନିଜ ନିଜ କୂଅ ଜଗି ରଖିଲେ, ସେଠାରୁ ପାଣି ନେବାକୁ କାହାରିକୁ ଛାଡ଼ିଲେ ନାହିଁ । ଫଳରେ ନଦୀ ପାଣି ପିଇବା ଛଡ଼ା ମଧ୍ୟବିତ୍ତ ଲୋକଙ୍କର ଅନ୍ୟ ଗତି ନ ଥିଲା ।

ଗ୍ରାମରେ ପ୍ରଥମେ ଜଣେ ରୋଗରେ ଆକ୍ରାନ୍ତ ହେଲା । ସେ ତାହା ଲୁଚାଇ ରଖିବାକୁ ଚେଷ୍ଟା କଲା । କିନ୍ତୁ ତା ଚେଷ୍ଟା ସଫଳ ହେଲା ନାହିଁ । ରୋଗ ଆକ୍ରମଣ କରିବାର ଗୃହ ପାଞ୍ଚ ଘଣ୍ଟା ମଧ୍ୟରେ ସେ ପଞ୍ଚତ୍ୱ ଲଭିବାକୁ ବାଧ୍ୟ ହେଲା । ସେତେବେଳେ ଯାଇ ତା ରୋଗ ବିଷୟ ପ୍ରକାଶ ପାଇଲା । ଚିକିତ୍ସକ ଡକା ହୋଇ ଆସିଲେ;

ମାନ ରୋଗୀର ଅବସ୍ଥା ଦେଖି କହିଲେ, "ବହୁତ ବିଳମ୍ବ ହୋଇଗଲା । ରୋଗଟା ଆରମ୍ଭ ସମୟରେ ଜଣା ପଡ଼ିଥିଲେ, ରୋଗୀ ବଞ୍ଚି ଯାଇଥାନ୍ତା ।" ଚିକିତ୍ସକ ତଥାପି ଔଷଧ ପ୍ରୟୋଗ କଲେ; କିନ୍ତୁ ରୋଗୀ ବଞ୍ଚିଲା ନାହିଁ ।

ବିସୂଚିକା ରୋଗରେ ଗ୍ରାମରୁ ଜଣେ ମରି ଯିବାରେ, ଅନ୍ୟ ସମସ୍ତଙ୍କ ମନରେ ଭୟ ଉପୁଜିଲା; କେବଳ ରାମଚନ୍ଦ୍ର ମହାପାତ୍ର ଭୟ ନ କରି, କହିଲେ, "ବିସୂଚିକା ହେଲା ତ କଣ ହୋଇଗଲା ? ଆମେ ପରା ସମସ୍ତେ ମନୁଷ୍ୟ, ଯମଙ୍କୁ ଏତେ ଡରିବା କାହିଁକି ? ଆମେ ସ୍ୱାସ୍ଥ୍ୟରକ୍ଷାର ନିୟମ ମାନି, ସାବଧାନ ହୋଇ, ଯଦି ଚଳିବା, ବିସୂଚିକା, ତ ବିସୂଚିକା ସ୍ୱୟଂ ଯମ ଆମର କିଛି ମାତ୍ର କ୍ଷତି କରି ପାରିବ ନାହିଁ । ଯମ କଣ ସୁସ୍ଥ ସବଳ ମନୁଷ୍ୟର ପାଖ ମାଡ଼ିବ ? ସମସ୍ତେ ସାବଧାନ ହୋଇ ଚଳ, ଦେଖିବ, ଦ୍ୱିତୀୟ ଲୋକ ରୋଗରେ ପଡ଼ିବ ନାହିଁ ।"

ବିସୂଚିକା ସମୟରେ କିପରି ସାବଧାନ ହୋଇ ଚଳିବାକୁ ହୁଏ, ମହାପାତ୍ରେ ସେ କଥା ଗ୍ରାମବାସୀମାନଙ୍କୁ ଭଲ ଭଲ କରି ବୁଝାଇଲେ । କିନ୍ତୁ ଲୋକମାନେ ତାଙ୍କ କଥାରେ ସେତେ ଆସ୍ଥା ରଖିଲେ ନାହିଁ । ଦୁଇ ଦିନ ମଧ୍ୟରେ ଏକ ସଙ୍ଗେ ତିନି ଜଣ ଆକ୍ରାନ୍ତ ହୋଇ ପଡ଼ିଲେ । ସେମାନଙ୍କ ମଧ୍ୟରୁ ଦୁଇ ଜଣ ଦଶବାର ଘଣ୍ଟା ଭିତରେ ମୃତ୍ୟୁ ମୁଖରେ ପଡ଼ିଗଲେ । ଗ୍ରାମରେ ଘୋର ଆତଙ୍କ ଉପସ୍ଥିତ ହେଲା । କେତେ ଜଣ ସଙ୍ଗତିସମ୍ପନ୍ନ ବ୍ୟକ୍ତି ଗ୍ରାମ ଛାଡ଼ି ଅନ୍ୟତ୍ର ଚାଲିଗଲେ । ଦିନକୁ ଦିନ ଗୋବିନ୍ଦପୁର ଅବସ୍ଥା ଶୋଚନୀୟ ହେବାକୁ ବସିଲା । ପ୍ରତିଦିନ ନୂଆ ନୂଆ ଲୋକ ରୋଗରେ ପଡ଼ିଲେ ଓ ପୂର୍ବରୁ ଆକ୍ରାନ୍ତ ହୋଇଥିବା ରୋଗୀମାନେ ମରିବାକୁ ଲାଗିଲେ । କେବଳ ମହାପାତ୍ରଙ୍କ ଘର ବ୍ୟତୀତ, ଅନ୍ୟ

ଜାହା ଘରେ ରୋଗ ପ୍ରବେଶ ନ କରି ରହିଲା ନାହିଁ । ଚିକିତ୍ସକମାନେ ରୋଗୀଙ୍କୁ ରକ୍ଷା କରିବାରେ ଅକ୍ଷମ ହେଲେ । ବହୁ ରୋଗୀ ଯମ କବଳରେ ପଡ଼ି ଇହଲୋକରୁ ଚାଲିଗଲେ । ସ୍ୱାସ୍ଥ୍ୟ ବିଭାଗ କର୍ମଚାରୀଗଣ, ଶତ ଚେଷ୍ଟା ସତ୍ତ୍ୱେ, ରୋଗର ପ୍ରାଦୁର୍ଭାବ କମାଇ ପାରିଲେ ନାହିଁ ।

ସେଥର ବିସୂଚିକାରେ ଗୋବିନ୍ଦପୁର ଗ୍ରାମରୁ ସବ ମୋଟ ଏକ ଶହ ବୟାନବେ ଜଣ ମୃତ୍ୟୁ ମୁଖରେ ପଡ଼ିଲେ । ରୋଗରେ ଅକ୍ରାନ୍ତ ହୋଇ ବାକି ଏକ ଶହ ଛପନ ଜଣ ଆରୋଗ୍ୟ ଲାଭ କଲେ । ଗ୍ରାମଟା ଛାରଖାର ହୋଇଗଲା । ଯେଉଁ ସଙ୍ଗତିସମ୍ପନ୍ନ ବ୍ୟକ୍ତିମାନେ ଗ୍ରାମ ଛାଡ଼ି ଚାଲିଯାଇଥିଲେ, ସେମାନେ ସେଠାକୁ ଫେରିବାକୁ ସାହସ କଲେ ନାହିଁ । ବାକି ଯେଉଁମାନେ ନ ଯାଇ ରହିଥିଲେ, ନିଜ ନିଜ ଆତ୍ମୀୟ ସ୍ୱଜନଙ୍କୁ ହରାଇ, ଶୋକରେ ଅଭିଭୂତ ହୋଇପଡ଼ିଲେ । ସେମାନେ ମଧ୍ୟ ଗ୍ରାମରୁ ଚାଲିଯାଇ ଅନ୍ୟତ୍ର ବାସ କରିବାକୁ ଇଚ୍ଛା କଲେ । କେବଳ ଦରିଦ୍ର ଓ ମଧ୍ୟବିତ୍ତ ଲୋକେ କହିଲେ, "ଅନ୍ୟତ୍ର ଯାଇ ଘରଦ୍ୱାର କରି ରହିବାକୁ ଆମର ବଳ କାହିଁ ? ଏହିଠାରେହିଁ ମାଟି କାମୁଡ଼ି ପଡ଼ିବାକୁ ଆମେ ବାଧ୍ୟ ।"

ଗୋବିନ୍ଦପୁର ବିସୂଚିକା ବିଷୟରେ ସରକାରଙ୍କ ପକ୍ଷରୁ ତଦନ୍ତ କରାଗଲା । ତଦନ୍ତ କରିବା କର୍ମଚାରୀ ରାମଚନ୍ଦ୍ର ମହାପାତ୍ରଙ୍କୁ ପଚାରିଲେ, "ଆପଣଙ୍କ ଘର ଏପରି ସଂକ୍ରାମକ ରୋଗରୁ କିପରି ରକ୍ଷା ପାଇଲା କହନ୍ତୁ ତ ।" ମହାପାତ୍ରେ କହିଲେ, "ମୁଁ ସ୍ୱାସ୍ଥ୍ୟରକ୍ଷା ବିଧାନ ପାଳନ କରି ରକ୍ଷା ପାଇଲି । ମାଛିମାନେ ବିସୂଚିକା ଜୀବାଣୁ ଚାରିଆଡ଼େ ଖେଳାଇ ଦିଅନ୍ତି । ଆମ ଘରେ ଆମେ ଖାଦ୍ୟପେୟ ସବୁ ଘୋଡ଼ାଇ ରଖୁ; ସେଥିରେ ମାଛି ବସାଇ

ଦେଇ ନାହିଁ । ଅନ୍ୟମାନେ ଯେଉଁ ନଦୀରୁ ପାଣି ଆଣି ପିଅନ୍ତି, ଆମେ ମଧ୍ୟ ସେହି ପାଣି ପିଉ । କିନ୍ତୁ ପାଣିକୁ ଆମେ ଚୁଲିରେ ବସାଇ ଫୁଟାଇ ନେଉ ଓ ପାଣି ଥଣ୍ଡା ହେବା ପରେ ପିଇଥାଉ । ଘରଦ୍ୱାର ଆମେ ଲିପାଲିପି କରି ପରିଚ୍ଛନ୍ନ ରଖୁ । ଏସବୁ ଆମକୁ ଖୁବ ସାହାଯ୍ୟ କଲା । କିନ୍ତୁ ଆମର ସର୍ବାପେକ୍ଷା ପ୍ରଧାନ ସହାୟକ ହେଲା ଆମ ନିଜ ମନର ଦମ୍ଭ ଓ ସାହସ । ଆମେମାନେ ଦିନେ ହେଲେ ଅକମ୍ମାଣ ଭୟରେ ବ୍ୟାକୁଳ ହୋଇନାହୁଁ । ଆମେ ସର୍ବଦା ବିଶ୍ୱାସ କରୁଛୁ ଯେ ଆମେ ସାବଧାନ ହୋଇ ଚଳୁଛୁ; ସୁତରାଂ ବିସୂଚିକା ଆମକୁ ସ୍ପର୍ଶ କରିବ ନାହିଁ ।"

ସେ ଘଟଣା ପରେ ସେ ଅଞ୍ଚଳରେ ବିସୂଚିକାର ପ୍ରାଦୁର୍ଭାବ କେତେଥର ଘଟିଲାଣି । କିନ୍ତୁ ଗୋବିନ୍ଦପୁରରେ ତାହା ଆଉ ଥରେ ପ୍ରବେଶ କରି ପାରି ନାହିଁ । ତଦନ୍ତ ପରେ ସରକାରଙ୍କ ପକ୍ଷରୁ ଯେଉଁ ବିବରଣୀ ପ୍ରକାଶ ପାଇଲା, ଗ୍ରାମବାସୀ ତାହା ପୁଙ୍ଖାନୁପୁଙ୍ଖରୂପେ ପାଠ କଲେ । ରାମଚନ୍ଦ୍ର ମହାପାତ୍ରଙ୍କ ଉତ୍ତର ସେମାନେ ମୁଖସ୍ଥ କରି ପକାଇଲେ । ଅତଏବ ବିସୂଚିକା ସମୟରେ ସାବଧାନ ହୋଇ ଚଳିବା ତାଙ୍କ ପକ୍ଷେ ଆଉ କଷ୍ଟକର ହେଲା ନାହିଁ । ଗୋବିନ୍ଦପୁରରେ ମନୁଷ୍ୟର ଶକ୍ତି ଯମ ଶକ୍ତି ଅପେକ୍ଷା ବଳବତ୍ତର ହୋଇଗଲା ।

## ପ୍ରଶ୍ନ

୧ । ତୁମେ ନିଜକୁ ରାମଚନ୍ଦ୍ର ମହାପାତ୍ର ମଣି ତଦନ୍ତ କର୍ମଚାରୀଙ୍କୁ ଉତ୍ତର ଦିଅ ।

୨ । ତୁମ ଗ୍ରାମରେ ହଇଜା ଲାଗିଲେ, ତୁମେ କଣ କରିବ ?

୩ । ତୁମ ଗ୍ରାମରେ ହଇଜା ଲାଗିବା ସମୟରେ ତୁମକୁ ଯଦି କେହି ଗ୍ରାମ ଛାଡ଼ି ପଳାଇବାକୁ କହେ, ତୁମେ କି ଉତ୍ତର ଦେବ ?

୪ । ଅପେକ୍ଷା, ବଳବତ୍ତର, ଅପେକ୍ଷା, ପ୍ରକାଶ, ପ୍ରାଦୁର୍ଭାବ, ପରିଚ୍ଛନ୍ନ, ଲୁପାଲୁପି, ବ୍ୟାକୁଳ, ଅକ୍ରମଣ, ଅବସ୍ଥା, ଅକ୍ରାନ୍ତ, ସ୍ୱାସ୍ଥ୍ୟ—ଲଗାଇ ବାକ୍ୟ ରଚନା କର ।

୫ । ମୋ ଛଡ଼ା ଏଠାରେ କେହି ନାହିଁ, ବହୁତ ଡେରି ହୋଇଗଲା, ସ୍ୱୟଂ ଯମ କଷ୍ଟ କରି ପାରିବ ନାହିଁ, ଆମର ସବୁଠାରୁ ବଡ଼ ସାହାଯ୍ୟକାରୀ ହେଲା ଆମ ସାହସ—ଏ ବାକ୍ୟମାନଙ୍କରେ ଛଡ଼ା, ସବୁଠାରୁ, ସାହାଯ୍ୟକାରୀ, ଡେରି ପଦ ପରିବର୍ତ୍ତେ ଅନ୍ୟ ପଦମାନ କହ ।

---

## ପଞ୍ଚକନ୍ୟା

ଶାସ୍ତ୍ରରେ ଅଛି ଯେ ଅହଲ୍ୟା, ଦ୍ରୌପଦୀ, ତାରା, କୁନ୍ତୀ ଓ ମନ୍ଦୋଦରୀ—ଏହି ପଞ୍ଚକନ୍ୟାଙ୍କ ନାମ ପ୍ରତିଦିନ ସ୍ମରଣ କଲେ ପାପ ଦୂର ହୁଏ । ଏ ପାଞ୍ଚଜଣ ପୌରାଣିକ ନାରୀ ଏବଂ କେବଳ ମନ୍ଦୋଦରୀଙ୍କ ବ୍ୟତୀତ ବାକି ସମସ୍ତେ ଭାରତୀୟ ନାରୀ । ମନ୍ଦୋଦରୀ ଲଙ୍କାର ରାକ୍ଷସ ରାଜା ରାବଣଙ୍କ ରାଣୀ । ଐତିହାସିକ ଯୁଗର ପଞ୍ଚକନ୍ୟାଙ୍କ ବିଷୟ ସଂକ୍ଷେପରେ ଆଲୋଚନା କରାଯାଉଛି ।

## ସରୋଜିନୀ ନାଇଡ଼ୁ

ସମଗ୍ର ଭାରତରେ ସରୋଜିନୀ ନାଇଡ଼ୁଙ୍କ ନାମ କାହାକୁ ଅବିଦିତ ନାହିଁ । ଯୁକ୍ତ ପ୍ରଦେଶର ଲାଟ ପଦରେ ଥିବାବେଳେ ତାଙ୍କର ମୃତ୍ୟୁ ଘଟିଲା । ସେତେବେଳେ ତାଙ୍କ ଶ୍ରାଦ୍ଧକ୍ରିୟା ବିଶେଷ ଆଡ଼ମ୍ବରରେ ପାଳିତ ହେଲା । ସାରା ଭାରତରେ ଦୁଃଖର ଛାୟା ପଡ଼ିଗଲା । ତାଙ୍କ ଶରୀର ମୃତ୍ତିକାରେ ମିଶି ଯାଇଛି; ମାତ୍ର ତାଙ୍କ ନାମ ସୁବର୍ଣ୍ଣ ଅକ୍ଷରରେ ଇତିହାସରେ ଲେଖା ହୋଇ ରହିବ ।

ସରୋଜିନୀ ଡାକ୍ତର ଅଘୋରନାଥ ଚଟ୍ଟୋପାଧ୍ୟାୟଙ୍କ ଔରସରେ ହାଇଦ୍ରାବାଦରେ ଜନ୍ମଗ୍ରହଣ କରିଥିଲେ । ବାରବର୍ଷ ବୟସରେ



ସେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ, ହାଇଦ୍ରାବାଦ ନିଜାମଙ୍କ ଠାରୁ ବୃତ୍ତି ନେଇ, ଉଚ୍ଚ ଶିକ୍ଷା ନିମନ୍ତେ ବିଲାତ ଯାତ୍ରା କଲେ । ବିଲାତରେ ଶିକ୍ଷା ଶେଷ କରି, ସେ ହାଇଦ୍ରାବାଦ ଫେରିଲେ । ଡାକ୍ତର ଗୋବିନ୍ଦରାଜୁଲୁ ନାଇଡୁଙ୍କ ସହିତ ତାଙ୍କର ବିବାହ ହେଲା ।

ପିତା ତାଙ୍କୁ ଗଣିତଶାସ୍ତ୍ର ଶିକ୍ଷା ଦେବାକୁ ଇଚ୍ଛା କରିଥିଲେ ସୁଦ୍ଧା ତାହା ହୋଇପାରିଲା ନାହିଁ । ସେ ଏଗାର ବର୍ଷ ବୟସରେ

ଗୋଟିଏ ବୀଜଗଣିତ ଅଙ୍କ କଷିବାକୁ ବସି ପରାସ୍ତ ହେଲେ । ସେତିକରେ ଗଣିତ ଶିକ୍ଷାରେ ତାଙ୍କ ମନ ଭାଙ୍ଗିପଡ଼ିଲା ଏବଂ କବିତା ପ୍ରତି ଅନୁରକ୍ତ ହେଲା । ସେ ନିତାନ୍ତ ବାଲ୍ୟବୟସରୁ କବିତା ଲେଖିବା ଆରମ୍ଭ କଲେ । ତେର ବର୍ଷ ବୟସରେ, ସେ ତେର ଶତ ପଂକ୍ତି କବିତା ଛ ଦିନ ଭିତରେ ରଚନା କରି ପକାଇଲେ । ତାଙ୍କର ଅଧିକାଂଶ କବିତା ଇଂରେଜି ଭାଷାରେ ଲିଖିତ । ତାହା ପଢ଼ି ଇଂରେଜ ପଣ୍ଡିତମାନେ ତାଙ୍କୁ ମୁକ୍ତକଣ୍ଠରେ ପ୍ରଶଂସା କରନ୍ତି । ତାଙ୍କର ଅନର୍ଗଳ ବକ୍ତୃତା ଶୁଣି ମଧ୍ୟ ଶ୍ରୋତାମାନେ ମୁଗ୍ଧ ହେଉଥିଲେ ।

କବି ଓ ବକ୍ତା ଭାବରେ ସରୋଜିନୀ ଦେବୀ ଅବଶ୍ୟ ଖ୍ୟାତି ଲାଭ କରିଥିଲେ । କିନ୍ତୁ ତାଙ୍କର ଅଧିକ ଖ୍ୟାତି ହୋଇଥିଲା ଦେଶ ସେବା ଯୋଗେ । ସେ ପଚାଶ ବର୍ଷରୁ ବେଶି କାଳ ମହାତ୍ମା ଗାନ୍ଧିଙ୍କ ସହିତ ସ୍ୱାଧୀନତା ସଂଗ୍ରାମରେ ଲଢ଼ିଥିଲେ । ସେଥିପାଇଁ ତାଙ୍କୁ ନାନା ଦୁଃଖ, କ୍ଲେଶ, ନିର୍ଯାତନ ଭୋଗିବାକୁ ପଡ଼ିଥିଲା । ତାଙ୍କୁ କେତେ ଥର କାରାଦଣ୍ଡ ମଧ୍ୟ ମିଳିଥିଲା । ସେ ଅକାତରରେ ସମସ୍ତ ଦଣ୍ଡ ଭୋଗ କରି ମହାତ୍ମା ଗାନ୍ଧିଙ୍କ ଆନ୍ଦୋଳନର ଶ୍ରେଷ୍ଠ ନେତ୍ରୀ ହୋଇ ପାରିଥିଲେ । ସେଥିପାଇଁ ୧୯୨୬ ମସିହାରେ ସେ ଜାତୀୟ ମହାସଭା କଂଗ୍ରେସର ସଭାନେତ୍ରୀ ନିର୍ବାଚିତ ହୋଇଥିଲେ । ସେ ଘଟଣାର ପ୍ରାୟ କୋଡ଼ିଏ ବର୍ଷ ପରେ, ଯୁକ୍ତପ୍ରଦେଶର ଲାଟପଦ ତାଙ୍କୁ ଗ୍ରହଣ କରିବାକୁ ପଡ଼ିଥିଲା । ସେ ଭାରତର, ବିଶେଷରେ ନାରୀ ସମାଜର ମୁଖ ଉଜ୍ଜ୍ୱଳ କରି ଯାଇଛନ୍ତି ।

## ଜୋନ୍ ଅଭ୍ ଆର୍କ

ଫ୍ରାନ୍ସ ବର୍ତ୍ତମାନ ଇଉରୋପ ମହାଦେଶରେ ଏକ ସ୍ୱାଧୀନ ରାଜ୍ୟ । କିନ୍ତୁ ପୂର୍ବେ ଥରେ ଇଂଲଣ୍ଡର ରାଜା, ରାଜା ଚାର୍ଲସଙ୍କୁ ପରାସ୍ତ

କରି, ଫ୍ରାନ୍‌ସ ଅଧିକାର କରିଥିଲେ । ଗୁର୍ଲସ ଭୟରେ ରାଜଧାନୀ ତ୍ୟାଗ କରି ପଳାତକ ହୋଇ ରହିଲେ । ଫରାସୀ ସୈନ୍ୟବୃନ୍ଦ ଦେଶର ସ୍ୱାଧୀନତା ନିମନ୍ତେ ଛୋଟ ଛୋଟ ଦଳ ନେଇ ନେଇ ଅବଶ୍ୟ ଯୁଦ୍ଧ ଚଳାଇଲେ । କିନ୍ତୁ ପ୍ରତ୍ୟେକ ଯୁଦ୍ଧରେ ସେମାନଙ୍କର ପରାଜୟ ଘଟିଲା, ଦେଶ ରକ୍ତରେ ବୁଡ଼ି ରହିବାହିଁ ସାର ହେଲା ।

ସେ ସମୟରେ ଏକ ପଲ୍ଲୀ ଗ୍ରାମରେ ଗୋଟିଏ ଦରିଦ୍ର ବାଳିକା ପ୍ରତ୍ୟହ ଛେଳି ଚରାଇବା ନିମନ୍ତେ ଜଙ୍ଗଲକୁ ଯାଉଥିଲା । ସେ ସର୍ବଦା ଚିନ୍ତାରେ ବୁଡ଼ି ରହିଥାଏ ସେଥିପାଇଁ ଲୋକେ ତାକୁ ବାୟାଣୀ ମନେ କରନ୍ତି । ସେ ସ୍ୱଦେଶର ଦୁର୍ଦ୍ଦଶା ଦେଖି ବିହ୍ୱଳ ହୋଇପଡ଼ିଲା ଏବଂ ବାରିବାର ମନକୁ ମନ କହିଲା, "ଏତେ ବଡ଼ ରାଜ୍ୟଠାରୁ କଣ ଜଣେ ବୀର ବାହାରିବ ନାହିଁ ?" ଏହି ଚିନ୍ତାରେ ଘାରି ହୋଇ, ସେ ଆହାର, ନିଦ୍ରା ତ୍ୟାଗ କରିବା ଉପରେ ବସିଲା ।

ସେହି ମାନସିକ ଅବସ୍ଥାରେ ତାକୁ ଦିନେ ଗୋଟାଏ ସ୍ୱର ଶୁଣାଗଲା । ସେ ଶୁଣିଲା, "ଜୋନ, ମୋତେ ସ୍ୱୟଂ ଈଶ୍ୱର ତୋ ନିକଟକୁ ପଠାଇଛନ୍ତି । ତୁ ରାଜାଙ୍କଠାରୁ ସୈନ୍ୟ ସାହାଯ୍ୟ ମାଗି ଯୁଦ୍ଧକୁ ଯା । ତୋରଦ୍ୱାରା ଫ୍ରାନ୍‌ସର ସ୍ୱାଧୀନତା ଫେରିଆସିବ ।" ଜୋନ କାନରେ କଥାଗୁଡ଼ାକ ସ୍ପଷ୍ଟ ଶୁଣିଲା, କିନ୍ତୁ କାହାରି ରୂପ ଆଖିରେ ଦେଖି ପାରିଲା ନାହିଁ । ସୁତରାଂ ସେ ତାକୁ ଦୈବବାଣୀ ମଣି ଉତ୍ସାହିତ ହୋଇ ଉଠିଲା ।

ଅନେକ ଚେଷ୍ଟାରେ ସେ ଗୁର୍ଲସଙ୍କ ସାକ୍ଷାତ ପାଇଲା । କିନ୍ତୁ ଗୁର୍ଲସ ପ୍ରଥମେ ତା ନିବେଦନକୁ ପ୍ରଳାପଭାବରେ ହସି ଉଡ଼ାଇ ଦେଲେ । ତଥାପି ଜୋନ ବିରତ ହେଲା ନାହିଁ, ନାନା ଉପାୟରେ ରାଜାଙ୍କୁ ବୁଝାଇବାକୁ ବସିଲା । ଶେଷରେ ସେ କୃତକାର୍ଯ୍ୟ ହେଲା । ତାଙ୍କ ପକ୍ଷରୁ ଯୁଦ୍ଧ କରିବା ନିମନ୍ତେ ରାଜା ତାକୁ ଅନୁମତି ଦେଲେ ।

ଦରଦ୍ର ଅଶିକ୍ଷିତା ଜୋନ ରଣସଜ୍ଜାରେ ବାହାର ପଡ଼ିଲା । ତାହା ଦେଖି ଫରାସୀ ସେନାଙ୍କ ପ୍ରାଣରେ ନୂତନ ଆଶାର ସଞ୍ଚାର ହେଲା । ରାଜ୍ୟ ସାରା ଉତ୍ସାହର ତରଙ୍ଗ ଖେଳିଗଲା ।

ଶତ୍ରୁ ସେତେବେଳେ ଅର୍ଲିନ ସହର ଅବରୋଧ କରି ରହିଥିଲେ । ଜୋନ ସୈନ୍ୟ ଚାଳନା କରି ଇଂରେଜ ସେନାଙ୍କୁ ଆକ୍ରମଣ କରିବାକୁ ଅଗ୍ରସର ହେଲା । ପ୍ରବଳ ଇଂରେଜ ସେନା ତାକୁ କୌତୁକ ମଣିଲେ । କିନ୍ତୁ ଜୋନ ଏପରି ଭାବରେ ଆକ୍ରମଣ କଲା ଯେ ସେଥିରେ ଇଂରେଜ ସୈନ୍ୟ ବ୍ୟସ୍ତବ୍ୟସ୍ତ ହୋଇ ପଡ଼ିଲେ । ଶେଷରେ ସେମାନେ ପରାଜୟ ସ୍ୱୀକାର କରି ଅର୍ଲିନ ଅବରୋଧ ଛାଡ଼ି ପଳାଇ ଗଲେ । ଜୋନ ବିଜୟ ଉଲ୍ଲାସରେ ଯାଇ ଚାର୍ଲସଙ୍କ ମସ୍ତକରେ ଫରାସୀ ରାଜମୁକୁଟ ପିନ୍ଧାଇଦେଲା । ସୁତରାଂ ସମଗ୍ର ଫରାସୀ ଜାତି 'ଧନ୍ୟ ଜୋନ୍ ଅଭ୍ ଆର୍କ' କହି ତା ପ୍ରଶଂସା ଘୋଷିବାରେ ଲାଗିଲେ ।

## ସତୀ ରହିମା

ପିରଥ ରାଜ୍ୟରେ ଆୟୁବ ନାମକ ଜଣେ ଧନଶାଳୀ ଧାର୍ମିକ ବ୍ୟକ୍ତି ଥିଲେ । ରହିମାଙ୍କର ତାଙ୍କର ସହିତ ବିବାହ ହେଲା । ରହିମା ପତିଗୃହରେ ପାଦ ପକାଇ ଦେଖିଲେ ଯେ ତାଙ୍କର ତିନି ଜଣ ସପତ୍ନୀ ରହିଛନ୍ତି । ସେ ସ୍ୱାମୀଙ୍କର ଓ ସେମାନଙ୍କର ସେବାରେ ନିଜକୁ ନିୟୋଜିତ କରି ସୁଖରେ କାଳ କଟାଇଲେ ।

କିନ୍ତୁ ଅଳ୍ପ ସମୟ ମଧ୍ୟରେ ଆୟୁବଙ୍କର ନାନା ବିପଦ ଘଟିଲା । ତାଙ୍କ ପୁତ୍ର କନ୍ୟାମାନେ ମରିଗଲେ; ବର୍ଷା ଓ ବନ୍ୟାରେ ତାଙ୍କ ଗୋଧନ ଭାଜିଗଲା; ତାଙ୍କ ବାସଗୃହ ସୁଦ୍ଧା ଅଗ୍ନି ଦାହରେ ଭସ୍ମସାତ୍ ହେଲା । ତାଙ୍କ ବିପଦ ସେତିକିରେ ସରିଲା ନାହିଁ । ଶେଷକୁ ସେ

ନିଜେ ଗଳିତ କୁଷ୍ଠ ବ୍ୟାଧିରେ ଆକ୍ରାନ୍ତ ହୋଇପଡ଼ିଲେ । ତହୁଁ ତାଙ୍କର ପ୍ରଥମ ତିନି ପତ୍ନୀ ଆତ୍ମରକ୍ଷା ନିମନ୍ତେ ନିଜ ନିଜ ପିତୃଗୃହକୁ ଫେରିଗଲେ । କେବଳ ରହିମା ପତିଙ୍କ ନିକଟରେ ରହି ତାଙ୍କର ସେବା ଶୁଶ୍ରୂଷା କରିବାରେ ଲାଗିଲେ ।

ଆୟୁବଙ୍କ ରୋଗ କ୍ରମଶଃ ବଢ଼ିବାରୁ ଗ୍ରାମବାସୀ ତାଙ୍କୁ ଗ୍ରାମରୁ ତଡ଼ିଦେଲେ । ରହିମା ତାଙ୍କୁ ନିଜ ପୃଷ୍ଠରେ ବହି, ଲୋକ ବସତି ଛାଡ଼ି ଅରଣ୍ୟକୁ ଚାଲିଗଲେ ଓ ସେଠାରେ କୁଟୀର ନିର୍ମାଣ କରି ପତିଙ୍କ ସଙ୍ଗେ ରହିଲେ । ସେ ପ୍ରତ୍ୟହ ନିକଟବର୍ତ୍ତୀ ଗ୍ରାମ-ମାନଙ୍କରୁ ଭିକ୍ଷା ମାଗି ଆଣି, ପତିଙ୍କର ଓ ନିଜର ଅନ୍ନ ସଂସ୍ଥାନ କରିବାରେ ଲାଗିଲେ । ଦିନେ ଜଣେ ଗୃହିଣୀ ତାଙ୍କ ଲୋଭନୀୟ କେଶଗୁଚ୍ଛ ଦେଖି କହିଲେ, "ତୁ ତୋ ବାଳ ପେଣ୍ଡାକ ମୋତେ ଦେ, ମୁଁ ତୋତେ ସାତ ଦିନର ଖୋରାକ ଥରକେ ଦେଇଦେବି ।" ରହିମା ସେଥିରେ ସ୍ୱୀକୃତ ହୋଇ ନିଜ କେଶଗୁଚ୍ଛ କାଟି ଦେଇଦେଲେ ।

ସେଦିନ ରହିମା କୁଟୀରକୁ ଫେରିବା ପୂର୍ବରୁ, ଜଣେ ଖଳ ଲୋକ ଆୟୁବଙ୍କୁ ଯାଇ କହିଲା, "ତୁମ ସ୍ତ୍ରୀଟା ଚୋରଣୀ; ସେ ରୋଜ ଚୋରି କରି ଆଣି ତୁମକୁ ଖୁଆଉଛି । ଆଜି ସେ ଧରା ପଡ଼ିଗଲା । ସେଥିପାଇଁ ଗ୍ରାମବାସୀ ତାକୁ ଲଣ୍ଡି କରି ଛାଡ଼ିଦେଇଛନ୍ତି । ତୁମେ ପରା ଧାର୍ମିକ ଲୋକ; ଚୋରି ମାଲରେ କିପରି ଚଳୁଛ ? ସେ ଲୋକ ଚାଲିଗଲା ପରେ, ରହିମା ଅନେକ ପଦାର୍ଥ ଧରି ଆସି ପହଞ୍ଚିଲେ । ଆୟୁବ ଦେଖିଲେ ଯେ ତାଙ୍କ କେଶଗୁଚ୍ଛ ପ୍ରକୃତରେ ନାହିଁ । ତହୁଁ ସେ କହିଲେ, "ରହିମା, ଛିଃ; ତୁମେ ଚୋରି କରି ଆଣି ମୋ ପେଟ ପୋଷୁଛ । ତୁମେ ତୁମ ବାଟ ଦେଖ, ମୁଁ ଆଉ ତୁମ ମୁହଁ ଚାହିଁବି ନାହିଁ ।"

ରହ୍ମମା ସ୍ୱାମୀଙ୍କ ଆଦେଶ ପାଳନ କରି କୁଟୀର ବାହାରକୁ ଗ୍ଲଲ୍‌ଗଲେ । ସେଠାରେ ସେ ଅଚେତନ ହୋଇ ପଡ଼ିଲେ । ଏଣେ ଅପୂର୍ବ ଈଶ୍ୱର ଉପାସନାରେ ବସିଲେ । ଉପାସନା ପରେ ତାଙ୍କର ଦିବ୍ୟ ଜ୍ଞାନ ଆସିଲା । ରହ୍ମମା ଯେ ନିର୍ଦ୍ଦୋଷୀ ସେ ବୁଝିପାରିଲେ ଏବଂ ତାଙ୍କୁ ଖୋଜିବାକୁ ବସି ବସି କୁଟୀର ଦ୍ୱାରକୁ ଗଲେ । ସେ ତାଙ୍କୁ ହାତରେ ହଲାଇ ହଲାଇ ତାଙ୍କର ସଂଜ୍ଞା ଆଣିଲେ । ଧର୍ମପ୍ରାଣ ଦମ୍ପତି ପୁନର୍ବାର ପୂର୍ବପରି ଦିନ କଟାଇବାରେ ଲାଗିଲେ । କାଳକ୍ରମେ ରହ୍ମମାଙ୍କ ସେବା ଶୁଶ୍ରୂଷାରେ ଅପୂର୍ବ ରୋଗମୁକ୍ତ ହୋଇଗଲେ ।

## ମହାରାଣୀ ଭିକ୍‌ଟୋରିଆ

ଭିକ୍ଟୋରିଆ ଦିନେ ଇଂଲଣ୍ଡର ରାଜ-ସିଂହାସନ ଲାଭ କରିବେ, ତାଙ୍କ ମା ସେ କଥା ପୂର୍ବରୁ ଜାଣି ପାରିଥିଲେ । ସୁତରାଂ ସେ ତାଙ୍କୁ ବାଲ୍ୟ ବୟସରୁ ସୁଶିକ୍ଷା ଦେଉଥିଲେ । ମା ତାଙ୍କ ଉପଦେଶ ଲାଭ କରି, ଭିକ୍‌ଟୋରିଆ ନାନାଗୁଣରେ ଭୂଷିତା ହେଲେ । ତାଙ୍କର ପ୍ରଧାନ ଗୁଣ ଥିଲା ଦୟା । ତାଙ୍କ ଦୟା ବିଷୟରେ ଅନେକ କାହାଣୀ ପ୍ରଚଳିତ ଅଛି ।

ବାଲ୍ୟ ବୟସରେ ଭିକ୍‌ଟୋରିଆ ଥରେ ଗୋଟିଏ ଦୋକାନକୁ କଣ୍ଢେଇ କିଣିବାକୁ ଗଲେ । କଣ୍ଢେଇ ଧରି ଫେରିବାବେଳେ ଜଣେ ଦରିଦ୍ର ଲୋକ ତାଙ୍କ ଦୃଷ୍ଟିରେ ପଡ଼ିଲା । ଲୋକଟି ଶୀତରେ ଥରୁଥିଲା ଏବଂ ତାଙ୍କୁ ଖଣ୍ଡିଏ ପୁରୁଣା ଶୀତବସ୍ତ୍ର ମାଗିଲା । କଣ୍ଢେଇ କିଣିବାରେ ତାଙ୍କର ସବୁ ଅର୍ଥ ଖର୍ଚ୍ଚ ହୋଇ ଯାଇଥିଲା । ବାଳିକା ଭିକ୍‌ଟୋରିଆ ଶୀତାର୍ତ୍ତ ଲୋକକୁ ସାହାଯ୍ୟ ଦେଇ ନ ପାରି ଦୁଃଖରେ ଅଭିଭୂତା ହୋଇପଡ଼ିଲେ । ତହୁଁ ସେ ସଙ୍ଗେ ସଙ୍ଗେ ଦୋକାନକୁ ଯାଇ, କଣ୍ଢେଇଟି ଫେରସ୍ତ ଦେଇ, ଟଙ୍କାତକ ଆଣି ତାକୁ ଦାନ କଲେ ।

ପଥା ସମୟରେ ଭିକ୍ଟୋରିଆ ରାଜ-ସିଂହାସନରେ ବସିଲେ। ଦିନେ ସେନାପତି ତାଙ୍କଠାରୁ ସ୍ୱାକ୍ଷର କରାଇନେବା ନିମନ୍ତେ ଗୋଟିଏ କାଗଜ ଧରି ଆସିଲେ। ତାହା ପଢ଼ି ମହାରାଣୀ ଭିକ୍ଟୋରିଆଙ୍କ ନେତ୍ରରୁ ଅଶ୍ରୁ ଝରିଲା। ସେ କାଗଜଟି ହାତରେ ଧରି ମନକୁ ମନ କହିଲେ, "ଏ ସାମାନ୍ୟ ସୈନିକକୁ ପ୍ରାଣଦଣ୍ଡ ନ ଦେଲେ କଣ ବିଶାଳ ଇଂରେଜ ସାମ୍ରାଜ୍ୟର ଅସ୍ତିତ୍ୱରେ ବାଧା ପଡ଼ିବ? ମୁଁ ସେନାପତିଙ୍କ ଅନୁରୋଧ ରକ୍ଷା କରି ପାରିବି ନାହିଁ।" ତହୁଁ ସେନାପତିଙ୍କୁ ସେ ସୈନିକର ଦୋଷାଦୋଷ ବିଷୟ ପଚାରିଲେ। ସେନାପତି କହିଲେ ଯେ



ସୈନିକ ବାରମ୍ବାର ଶୃଙ୍ଖଳା ଦୁଷ୍ଟିରୁ ତାକୁ ଦଣ୍ଡ ଦେବାକୁ ପଡ଼ୁଛି। ତାହା ଶୁଣି ମହାରାଣୀ କହିଲେ, "କ୍ଷମା ଦେବାପାଇଁ ଆଇନରେ ବୋଧହୁଏ ବିଧାନ ଅଛି। ମୁଁ ଏ ସୈନିକକୁ ପ୍ରାଣଦଣ୍ଡରୁ ନିସ୍ତୃତି ଦେବାକୁ ଇଚ୍ଛା କରେ। ଅତଏବ ମୁଁ ଏ ଦଣ୍ଡ ଆଦେଶ ପତ୍ରରେ ସ୍ୱାକ୍ଷର କରିପାରିବି ନାହିଁ।"

## ଗୁନ୍ଦବିବି

ମୋଗଲ ସମ୍ରାଟ୍ ଅକବର ସମଗ୍ର ଉତ୍ତର ଭାରତ ଅଧିକାର କରିଥିଲେ। କିନ୍ତୁ ଦକ୍ଷିଣରେ ବିଜାପୁର, ଅହମ୍ମଦନଗର ପ୍ରଭୃତି ତାଙ୍କ ଅଧୀନତା ସ୍ୱୀକାର ନ କରି ରହିଥିଲା। ଅକବର ସେ ସବୁ ରାଜ୍ୟ ଅଧିକୃତ କରିବା ନିମନ୍ତେ ସର୍ବଦା ସୁବିଧା ଖୋଜୁଥିଲେ।

ସେହି ସମୟରେ ଅହମ୍ମଦନଗର ରାଜାଙ୍କର ହଠାତ୍ ମୃତ୍ୟୁ ଘଟିଲା । ରାଜସିଂହାସନ ଲାଗି ତାଙ୍କର ଦୁଇ ଉତ୍ତରାଧିକାରୀଙ୍କ ମଧ୍ୟରେ ବିବାଦ ଉପସ୍ଥିତ ହେଲା । ସେମାନଙ୍କ ଭିତରୁ ଜଣେ ଅକବରଙ୍କ ସାହାଯ୍ୟ ଭିକ୍ଷା କଲେ । ଅକବର ତତ୍କ୍ଷଣାତ୍ ନିଜପୁତ୍ର ମୁରାଦଙ୍କୁ ସସୈନ୍ୟେ ଅହମ୍ମଦନଗର ଆକ୍ରମଣ କରିବାକୁ ପଠାଇଦେଲେ ।

ମୁରାଦ ପହଞ୍ଚି ଅହମ୍ମଦନଗର ଦୁର୍ଗ ଅବରୋଧ କଲେ । ତାହା ରକ୍ଷା କରିବା ନିମନ୍ତେ ସମଗ୍ର ରାଜ୍ୟରୁ ଜଣେ ସୁଦ୍ଧା ବୀର ବାହାରିଲେ ନାହିଁ । ମୃତ ରାଜାଙ୍କ ବିଧବା କନ୍ୟା ଚାନ୍ଦବିବି, ପିତୃ-ରାଜ୍ୟର ସ୍ୱାଧୀନତା ନିମନ୍ତେ, ନିଜେ ଯୁଦ୍ଧରେ ଅଗ୍ରସର ହେଲେ । ମୋଗଲ ସୈନ୍ୟ, ଅନେକ ଦିନ ଅବରୋଧ କଲା ପରେ, ଦିନେ ରାତିରେ ତୋପଦ୍ୱାରା ଦୁର୍ଗ ପ୍ରାଚୀରର ଏକ ଅଂଶ ଭାଙ୍ଗି ପକାଇଲେ । ପରଦିନ ସକାଳେ ସେମାନେ ସେହି ବାଟେ ଦୁର୍ଗ ମଧ୍ୟରେ ପ୍ରବେଶ କରିଥାନ୍ତେ । ଚାନ୍ଦବିବି, ରାତାରାତି ପ୍ରାଚୀରର ଭଗ୍ନ ଅଂଶ ମରାମତି କରିବାକୁ ଲୋକ ନିଯୁକ୍ତ କରି, ନିଜେ ସସୈନ୍ୟେ ପଥରୋଧ କରି ଠିଆ ହେଲେ । ଉଭୟ ସେନାଙ୍କ ମଧ୍ୟରେ ଯୁଦ୍ଧ ଚାଲିଲା । ଚାନ୍ଦବିବି ଶତ୍ରୁ ସୈନ୍ୟଙ୍କ ଉପରେ ଗୁଳି ବର୍ଷଣ କରିବାରେ ଲାଗିଲେ । କଥିତ ଅଛି, ତାଙ୍କ ଗୁଳିସବୁ ସରିଗଲା; ଅଥଚ ସେ ଗୁଳି ବର୍ଷଣରୁ କ୍ଷାନ୍ତ ନ ହୋଇ, ନିଜ ସୁନା ଅଲଙ୍କାରମାନ ଗୋଟିକି ଗୋଟି ବନ୍ଧୁକରେ ପୂରାଇ, ଗୁଳି କରି ମାଇଲେ । ଶେଷରେ ମୋଗଲ ସୈନ୍ୟ ପରାସ୍ତ ହୋଇ ପଳାଇଗଲେ ।

## ପ୍ରଶ୍ନ

୧ । ସରୋଜିନୀ ଦେବୀ କି ଖ୍ୟାତି ଅର୍ଜନ କରିଥିଲେ ?

୨ । ଚାର୍ଲସ ଇଂରେଜଙ୍କ ଦ୍ୱାରା ପରାସ୍ତ ହେବା ପରେ ପୁଣି ରାଜମୁକୁଟ ଧାରଣ କଲେ କିପରି ?

୩ । ଖଳ ବ୍ୟକ୍ତିଦ୍ୱାରା ରତ୍ନମାନଙ୍କର କି କ୍ଷତି ଘଟିଲା ?

୪ । ଭିକ୍‌ଟୋରିଅଙ୍କ ଦୟାଗୁଣର ଗୋଟିଏ ଉଦାହରଣ ଦିଅ ।

୫ । ମୁରାଦ ଅହମ୍ମଦନଗର କାହିଁକି ଅଧିକାର କରି ପାରିଲେ ନାହିଁ ?

---

## କାହାକୁ ଭିକ୍ଷା ମାଗିବ ?

ବହୁ ଶତ ବର୍ଷ ପୂର୍ବେ, ଦେବାର୍ଚ୍ଚନେ ଦିନେ
ଥିଲେ ରତ ଉତ୍କଳ ନୃମଣି;
ଘଣ୍ଟା ବାଦ୍ୟ ସ୍ତୋତ୍ର ସ୍ୱରେ କମ୍ପଇ ମନ୍ଦିର,
ଚତୁର୍ଦ୍ଦିଗେ ଖେଳେ ପ୍ରତିଧ୍ୱନି ।
ଦ୍ୱାରେ କର ଯୋଡ଼ି ଉଭା ଶଙ୍କିତ ଭିକାରୀ,
ଦେବାର୍ଚ୍ଚନେ ହୁଏ ସିନା ଭାଗୀ
ଦେବତା ଦର୍ଶନ ତାର ନୁହଇ କାମନା,
ଅଛିଛି ସେ, ନେବ ଭିକ୍ଷା ମାଗି ।
କେତେ ଦଣ୍ଡ ଅନ୍ତେ ବନ୍ଦ ହୋଇଗଲା ସ୍ୱର,
ନରମଣି କଲେ ପ୍ରଣିପାତ;
କହିଲେ, "ଭିକ୍ଷା ମୋ, ଭର ଏ ଦୀନ ଭଣ୍ଡାର
ଧନ ରତ୍ନେ, ହେ ଜଗତ ନାଥ ।"
ସାରି ନମସ୍କାର ନୃପ ଉଠିଲେ ଭୂତଳୁ,
ଫେରାଇଲେ ମୁଖ ଯିବାପାଇଁ;
ଦେଖନ୍ତି, ଭିକାରି ଯାଏ ବାହୁଡ଼ି ମନ୍ଦିରୁ;
ନ ବୁଝିଲେ ହେତୁ ନରସାଇଁ ।

ବିଧାନ ତାଙ୍କର ଅଛୁ ଭିକ୍ଷା ଦେବା ଲଗି
ମନତୋଷି ଦେବାଇନ ଅନ୍ତେ;
ଭିକ୍ଷୁକ ନ ଥିଲେ, ଭିକ୍ଷାଦେବେ ସେ କା କରେ ?
ବିଧି ରକ୍ଷା ହୋଇବ କେମନ୍ତେ ?
ଡାକିଲେ ଭିକ୍ଷୁକେ ତହୁଁ ପଛୁଁ ନରଗଣ,
ପଚାରିଲେ, "ଯାଅ କାହାଁ ଫେରି ?
ଯା ମାଗିବ ମାଗ ଭିକ୍ଷା, ଦେବି ମୁଁ," କହିଲେ,
"ଏ ମୁହୂର୍ତ୍ତେ ନାହିଁ ଲବେ ଡେରି ।"
ଶୁଣିଲା ଭିକ୍ଷାଶୀ କାନେ, ଯୋଡ଼ି ବେନି କର,
ବଖାଣିଲା ଗମ୍ଭୀର ବଚନ,
"କୋଟିପତି ମଣି ପାଶେ ଆସିଥିଲି ଆଶେ
କରିବାକୁ ସାର୍ଥକ ଜୀବନ ।
"ବଡ଼ ମୋ କୁଟୁମ୍ବ, ତହୁଁ ବେଶି ଭିକ୍ଷା ଲଗି
ଲୋଡ଼ିଥିଲି ଶ୍ରୀମନ୍ତଙ୍କ ଭେଟ;
ଭିକ୍ଷୁକ ଭଣ୍ଡାରୁ ଭିକ୍ଷା ନେଲେ କି ବା ଲାଭ ?
ଛାଡ଼ି ଯିବ, ନ ପୂରିବ ପେଟ ।"
ଶୁଣିଲେ ନୃମଣି, ଅର୍ଥ ନ ପାରିଲେ ବୁଝି;
ପଚାରିଲେ, ବାଖ୍ୟଲ ସେ ଜନ;
ତେବେ, ବିଧି ରକ୍ଷା ଲଗି ଆଦେଶିଲେ ଭୂପ,
"ପାତ ହାତ ଦେନ ଭିକ୍ଷା ଧନ ।"
ପ୍ରସାରିଲା ନାହିଁ କର ସେ ଦୀନ ଭିକ୍ଷାଶୀ,
ପୁଣି ଥରେ କହିଲା ବଖାଣି,
"ଭିକ୍ଷାର୍ଥୀର ହାତୁ ଭିକ୍ଷା ନେବା ନୁହେ ଧର୍ମ,
ବୁଝିଥିବେ ତୁମ୍ଭେ ମହା ଜ୍ଞାନୀ ।

"ବନ୍ଧୁ ପୁତ୍ର ନିଜେ ଭିକ୍ଷା ମାଗନ୍ତି ମଣିମା;
ମୋତେ ଭିକ୍ଷା ଦେବେ ପୁଣି କାହୁଁ ?
ଯେ ଦେବେ ଯମୁକୁ ଧନ ତାଙ୍କୁ ନିବେଦିଲେ,
ମୋ ହୀନତା ନ ରହିବ ଅଜ ।"

## ପ୍ରଶ୍ନ

୧ । ଭିକାରୀ ରଜାଙ୍କ ନିକଟକୁ କାହିଁକି ଯାଇଥିଲା ?

୨ । ଶେଷ ଭିକ୍ଷା ନ ନେଇ ଫେରଯାଉଥିଲା କାହିଁକି ?

୩ । ଏ ପଦ୍ୟର ବିଷୟ ସରଳ ଗଦ୍ୟରେ ପ୍ରକାଶ କର ।

୪ । ନମସ୍କାର, କୋଟିପତି, ସାର୍ଥକ, ଭେଟି, ବାଗୁଲି, ହୀନତା, ପ୍ରତଧ୍ୱନି, ପ୍ରଣିପାତ—ଲଗାଇ ବାକ୍ୟ ରଚନା କର ।

୫ । ରଜା, ଭିକାରୀ, ବନ୍ଧୁ—ଏହି ଅର୍ଥରେ ଏ ପଦ୍ୟରେ କି କି ଶବ୍ଦ ବ୍ୟବହୃତ ହୋଇଛି ?

---

# ପାଣିରେ ରହେ ମାଛ ନୁହେ

ମଧୁ—ଯଦୁ, ତୁ ଯେତେ ଜୀବ ଜନ୍ତୁ ଦେଖିଛୁ, ସେମାନଙ୍କ ମଧ୍ୟରେ ଆକାରରେ ସବୁଠାରୁ ବଡ଼ କିଏ, କହିଲୁ ଦେଖି ।

ଯଦୁ—ମୁଁ ହାତୀ ଦେଖିଛି । ଆକାରରେ ତା ପର ବୃହତ୍ ଜୀବ ପୃଥିବୀରେ କଣ ଆଉ ଅଛନ୍ତି ?

ମଧୁ—ତୁ ପୃଥିବୀର ସମସ୍ତ ଅଞ୍ଚଳ ଦେଖିଥିଲେ, ଏପରି ମତ ପ୍ରକାଶ କରନ୍ତୁ ନାହିଁ । ତୁ କେବଳ ସ୍ଥଳ ଭାଗର ବୃହତ୍ତମ ଜନ୍ତୁ ଦେଖିଛୁ । ତୁ ଜାଣୁ ପୃଥିବୀରେ ସ୍ଥଳଭାଗ ଓ ଜଳଭାଗର ଅନୁପାତ କେତେ ?

ଯଦୁ—ସେ କଥା ତ ଭୂଗୋଳରେ ଅଛି । ଜଳଭାଗ, ସ୍ଥଳଭାଗର ତିନି ଗୁଣ ପରା ।

ମଧୁ—ଜଳଭାଗର ଆୟତନ ଯେତେବେଳେ ଏତେ ବେଶି, ତୁ କାହିଁକି ଭାବୁନାହୁଁ ଯେ ସ୍ଥଳଭାଗର ବୃହତ୍ତମ ଜୀବ ଅପେକ୍ଷା ଜଳଭାଗରେ ଅଧିକ ବୃହତ୍ତର ଜୀବ ଥିବେ ?

ଯଦୁ—ଜଳରେ ତ ମାଛ ରହନ୍ତି । ରୋହି, ଭାକୁର, ଖଇଙ୍ଗା, ଭେକଟି, ଇଲିସି ଆଦି ବଡ଼ ବଡ଼ ମାଛ ମୁଁ ଦେଖିଛି । ଏ ସବୁ ମଧ୍ୟରୁ କୌଣସି ପ୍ରକାର ମାଛ ଆକାରରେ କଣ ହାତୀ ପାସଙ୍ଗରେ ପଡ଼ିବ ? ତେବେ, ମହୁରାଳି ମାଛ ସବୁଠାରୁ ବଡ଼ ଜୀବ ବୋଲି ତୁ କହିବାକୁ ଚାହୁଁ ନା କଣ ?

ମଧୁ—ଧେତ୍; କଣ ଥଟ୍ଟା କରିବାକୁ ବସିଛୁ ? ତୋର ତ ଜ୍ଞାନ ବହୁତ କମ୍ । ପାଣିରେ କେବଳ ଯେ ମାଛ ରହନ୍ତି, ତା ନୁହେଁ; ତହିଁରେ ଅନ୍ୟ ଅନେକ ପ୍ରକାର ଜୀବ ମଧ୍ୟ ବାସ କରନ୍ତି । ସେହି ଜୀବମାନଙ୍କ ମଧ୍ୟରେ ସବୁଠାରୁ ବଡ଼ ଜୀବର ନାମ ତିମି ।

ଯଦୁ—ତେବେ, ତିମି ଏକ ପ୍ରକାର ବଡ଼ ମାଛ ।

ମଧୁ—ନା, ତିମି ଏକାବେଳକେ ମାଛ ନୁହେ । ତାହା ଆକାରରେ ପ୍ରକାଣ୍ଡ । ସାଧାରଣ ତିମି ପଚିଶ ହାତ ପର୍ଯ୍ୟନ୍ତ ଲମ୍ବା ହୁଅନ୍ତି । କିନ୍ତୁ ତିମିକୁ ମାଛରେ ପରିଗଣିତ କରିବା, ମନୁଷ୍ୟକୁ ବେଙ୍ଗ ମଣିବା ସଙ୍ଗେ ସମାନ ।

ଯଦୁ—କାହିଁକି ? ଅନ୍ୟ ଛଡ଼ା ମାଛଠାରୁ ତିମିର ଅନ୍ୟ ପାର୍ଥକ୍ୟ କଅଣ ଅଛି ?

ମଧୁ—ପାର୍ଥକ୍ୟ ବହୁତ ବେଶି । ପ୍ରଥମ ପାର୍ଥକ୍ୟ ହେଉଛି, ମାଛ ଦେହର ରକ୍ତ ଉଷ୍ମ ନୁହେ, ଶୀତଳ; ତିମି ରକ୍ତ ମନୁଷ୍ୟ ରକ୍ତ-

ପର ଜନ୍ତୁ । ଦ୍ୱିତୀୟରେ, ତିମି ନିଜ ସନ୍ତାନମାନଙ୍କୁ ସ୍ତନ୍ୟପାନ କରାଏ; ମାଛ ସ୍ତନ୍ୟପାୟୀ ନୁହେ ।

ଯଦୁ—ମୁଁ ପୁରୀ ଓ ଗୋପାଳପୁରରେ ସମୁଦ୍ର ଦେଖିଛି । ଉଭୟ ସ୍ଥାନରେ ସମୁଦ୍ରରୁ କେଉଟମାନେ ମାଛ ଧରନ୍ତି । କିନ୍ତୁ ତିମି ଧରିବା ମୋ ଦୃଷ୍ଟିରେ କେବେ ପଡ଼ି ନାହିଁ ।



ମଧୁ—ତିମି ଆମ ଏ ସମୁଦ୍ରମାନଙ୍କରେ ରହନ୍ତି ନାହିଁ । ସେମାନେ ଶୀତକଟିବନ୍ଧରେ, ବରଫ ମିଶ୍ରିତ ଶୀତଳ ପାଣିରେ ବାସ କରନ୍ତି । ବରଫ ଭିତରେ ସୁଦ୍ଧା ସେମାନଙ୍କ ରକ୍ତ ଉଷ୍ଣ ରହେ । ତାଙ୍କ ଚର୍ମ ତଳେ ଏକ ପ୍ରସ୍ତ ମୋଟା ଚର୍ବି ରହିଥାଏ । ତାହାର ଯୋଗେ, ବାହାରେ ଭୀଷଣ ଥଣ୍ଡା ହେଲେ ମଧ୍ୟ, ଦେହ ଭିତରର ରକ୍ତ ଉଷ୍ଣ ହୋଇ ରହିପାରେ ।

ଯଦୁ—ତିମି କଣ ଖାଇ ଜୀବନ ଧାରଣ କରେ ? ସେ ତ ଏଡ଼େ ପ୍ରକାଣ୍ଡ ଜୀବ; ବଡ଼ ବଡ଼ କୁମ୍ଭୀର ମଗର ପ୍ରଭୃତି ଧରି ଖାଉଥିବ ନିଶ୍ଚୟ । ନୋହିଲେ ବଞ୍ଚନ୍ତା କିପରି ?

ମଧୁ—ନା, ଯଦୁ; ସବୁ ଶ୍ରେଣୀର ତିମି ବଡ଼ ବଡ଼ ଜନ୍ତୁ ଖାଇପାରନ୍ତି ନାହିଁ । କେବଳ ଉଷ୍ଣ ଜଳରେ ଯେଉଁ ତିମି ବାସ କରେ, ସେ ଜଣେ ମନୁଷ୍ୟକୁ ଅକ୍ଳେଶରେ ଗିଳିଦେଇ ପାରେ । ଶୀତକଟିବନ୍ଧରେ ବାସ କରୁଥିବା ତିମିର ତଣ୍ଟି ଅତିଶୟ ସରୁ । ସୁତରାଂ ସେ କେବଳ ଛୋଟ ଛୋଟ ମାଛ ଖାଇପାରେ । ଶୀତକଟି ବନ୍ଧରେ ବାସ କରୁଥିବା ତିମିଙ୍କ ସଂଖ୍ୟା ବହୁତ ବେଶି । ସୁତରାଂ ତିମି କହିଲେ ଶୀତକଟିବନ୍ଧର ତିମିକୁ ବୁଝାଏ ।

ଯଦୁ—ଏଡ଼େ ପ୍ରକାଣ୍ଡ ଜନ୍ତୁ ନିଶ୍ଚୟ ଏକା ରହୁଥିବ ଗୋଟାକ ନିକଟରେ ତ ଅନ୍ୟ ଗୋଟାଏ ତିଷ୍ଠି ପାରୁ ନ ଥିବ ।

ମଧୁ—ନା, ଏହା ଏକ ଭ୍ରମ, ଯଦୁ । ତିମି ଏକା ରହେ ନାହିଁ, ନିଜ ପରିବାରବର୍ଗଙ୍କୁ ଧରି ସମୁଦ୍ରର ଏକ ଅଂଶରେ ବାସ କରେ । ଅବଶ୍ୟ ଗୋଟିଏ ତିମି ପରିବାର ନିକଟରେ ଅନ୍ୟ ଗୋଟିଏ ତିମି ପରିବାର ରହିପାରେ ନାହିଁ । ଗ୍ରୀଷ୍ମକଟିବନ୍ଧରେ ରହିବା ତିମି ନିଜ କୁଟୁମ୍ବ ଧରି ବାସ କରିବା ବେଶି ମାତ୍ରାରେ ଦେଖାଯାଏ । ଗୋଟିଏ ଗୋଟିଏ ତିମି ଏବଂ ତାଙ୍କ ସ୍ତ୍ରୀ ଓ ସନ୍ତାନ ସନ୍ତତି ଏକତ୍ର ମେଳ ବାନ୍ଧି ରହନ୍ତି ।

ଯଦୁ—ଏକାଧିକ ତିମିକୁଟୁମ୍ବ ଘଟଣାକ୍ରମେ ପରସ୍ପର ସହିତ ମିଶୁଥିବା ସମୟରେ କଣ ବନ୍ଧୁତା ଅତୁଟ ରହନ୍ତି ?

ମଧୁ—ନା, ଅଦୌ ନୁହେ । ହଠାତ୍ ଦୁଇଟି ତିମି କୁଟୁମ୍ବ ମଧ୍ୟରେ ସାକ୍ଷାତ୍ ଘଟିଲେ, ଉଭୟ କୁଟୁମ୍ବର କର୍ତ୍ତାଙ୍କ ମଧ୍ୟରେ ସଙ୍ଗେ

ସଙ୍ଗେ ଯୁଦ୍ଧ ଅରମ୍ଭ ହୋଇଯାଏ । ସେ ଯୁଦ୍ଧ ଏତେ ଭୀଷଣ ଅକାର ଧାରଣ କରେ ଯେ ସମୁଦ୍ର ବକ୍ଷ ସେଥିରେ ବିଦୀର୍ଣ୍ଣ ହୋଇଯାଏ । କେବଳ ଦୁହିଙ୍କ ମଧ୍ୟରୁ ଗୋଟିଏ ପରାଜୟ ସ୍ୱୀକାର କଲେ ବା ମରିଗଲେ ଯୁଦ୍ଧ ବନ୍ଦ ହୁଏ ।

ଯଦୁ—ହାତୀକୁ ତ ମନୁଷ୍ୟ ପୋଷ ମନାଇ ନିଜ କାର୍ଯ୍ୟରେ ନିୟୋଜିତ କରୁଛନ୍ତି; ତିମିକି ମଧ୍ୟ ସେହିପରି କାର୍ଯ୍ୟରେ ଲଗାଯାଏ ନା କଣ ?

ମଧୁ—ତିମିକୁ ଏ ପର୍ଯ୍ୟନ୍ତ କୌଣସିଠାରେ କେହି ପୋଷ ମନାଇ ନାହାନ୍ତି । ତେବେ, ତିମି ଶିକାର କରାଯାଏ । ତିମି ଚର୍ବି ନାନାରୂପେ ମନୁଷ୍ୟର ବ୍ୟବହାରରେ ଲାଗେ । ତାର ମୂଲ୍ୟ ମଧ୍ୟ ବହୁତ ବେଶି । ମାତ୍ର ବର୍ତ୍ତମାନ ଯୁଗରେ ଖଣିଜ ତୈଳ ତିମି ଚର୍ବିର ସ୍ଥାନ ଅଧିକାର କରିନେଲାଣି । ସୁତରାଂ ତାର ମୂଲ୍ୟ ମଧ୍ୟ ହ୍ରାସ ହୋଇଯାଉଛି । ତିମି ଶିକାର କରିବା ବ୍ୟବସାୟ ଆଉ ପୂର୍ବପରି ଲାଭଜନକ ହେଉ ନାହିଁ ।

ଯଦୁ—ଅଚ୍ଛା, ଏତେ ବଡ଼ ପ୍ରାଣୀକୁ ଲୋକେ ମାରନ୍ତି କିପରି ?

ମଧୁ—ଶିକାରୀମାନେ ତ୍ରିଶୂଳ ଅକାରର ପ୍ରକାଣ୍ଡ ତେଣ୍ଟାମାନ ଧରି ତିମି ଶିକାରରେ ବାହାରନ୍ତି । ଦଶ ପନ୍ଦର ତେଣ୍ଟା ଉପର୍ଯ୍ୟୁପରି ଦେହରେ ଭୁଷି ହୋଇଗଲେ ତିମି ପଳାଇ ନ ପାରି ଥକାମାରି ରହିଯାଏ । ନିତାନ୍ତ ନିଷ୍ଠୁରଭାବରେ ପ୍ରହାର ନ କଲେ, ତିମି ଧରିବା ଅସମ୍ଭବ ।

## ପ୍ରଶ୍ନ

୧ । ତିମି କେଉଁଠାରେ ଓ କିପରି ଭାବରେ ବାସ କରେ ?

୨ । ତିମି କଣ ଖାଇ ଜୀବନ ଧାରଣ କରେ ?

୩ । ତୁମ୍ଭକୁ ଭଟିମି ଶିକାରକୁ ଡାକିଲେ ତୁମେ କେଉଁ କାରଣରୁ ଯିବ ବା ନ ଯିବ ?

୪ । ଉପର୍ଯ୍ୟୁପରି, ନିଷ୍ଠୁର, ହ୍ରାସ, ନିଯୋଜିତ, କୁଟୁମ୍ବ, ସନ୍ତୁଷ୍ଟ, ମିଶ୍ରିତ, ବର୍ଗ, ଅକ୍ଳେଶରେ, ବୃହତ୍ତମ, ଉତ୍ପନ୍ନ— ବ୍ୟବହାର କରି ବାକ୍ୟ ରଚନା କର ।

୫ । ଅସମ୍ଭବ, ନିଷ୍ଠୁର, ମାରିବା, ବନ୍ଧୁତା, ଶୀତ, ଜ୍ଞାନ, ବଡ଼, କ୍ଷୁଦ୍ର—ପ୍ରତ୍ୟେକର ବିପରୀତ ଅର୍ଥବୋଧକ ଶବ୍ଦ କହ ।

---

## କୃଷି ଓ କୃଷକର ଆସନ

ଥରେ ଓକିଲ, ଡାକ୍ତର, ବଣିକପତି, ପୋଲିସ କର୍ମଚାରୀ, ବ୍ୟବସାୟୀ, ଶିକ୍ଷକ, କୃଷକ ପ୍ରଭୃତି ଏକତ୍ର ବସି ଆଲୋଚନା କରୁଥିଲେ । ସମସ୍ତେ ଗୋଟିଏ ଭୋଜିକୁ ନିମନ୍ତ୍ରିତ ହୋଇ ଯାଇ-ଥିଲେ । ବଣିକପତି, ପୋଲିସ କର୍ମଚାରୀ, ଡାକ୍ତର, ବ୍ୟବସାୟୀ ଏବଂ ଓକିଲ ସବୁ ପ୍ରଥମେ ବସିଥିଲେ । ସେମାନଙ୍କ ପଛକୁ ଶିକ୍ଷକ ଓ ତାଙ୍କ ପଛକୁ କୃଷକ ନିଜ ନିଜ ଆସନ ବାଛି ନେଇଥିଲେ । ଉପସ୍ଥିତ ଲୋକେ ଯେ ଯାହା ବ୍ୟବସାୟର ଉତ୍କର୍ଷ ଦେଖାଇ ଆନନ୍ଦ ଅନୁଭବ କରୁଥିଲେ । କୃଷକ ବିଚାରି ଦେଖିଲା ଯେ ସେ ସବୁ ଯୁକ୍ତିତର୍କରେ ତାର ସ୍ଥାନ ନାହିଁ । ଅତଏବ ସେ ପାଟି ନ ଫିଟାଇ ବସି ରହିଥିଲା ମାତ୍ର ।

ଏପରି ସମୟରେ ମନ୍ତ୍ରୀ ଆସି ପହଞ୍ଚିଲେ । ନିମନ୍ତ୍ରଣକାରୀ ନିମନ୍ତ୍ରିତ ବ୍ୟକ୍ତିମାନଙ୍କୁ ଜଣ ଜଣ କରି ତାଙ୍କୁ ଚିହ୍ନାଇବାରେ ଲାଗିଲେ । ମନ୍ତ୍ରୀ ପ୍ରତ୍ୟେକଙ୍କ ସହିତ କରମର୍ଦ୍ଦନ କରି ଯାଇ ଶେଷରେ କୃଷକ ପାଖେ ପହଞ୍ଚିଲେ । ସେ ଜଣକୁ ନିମନ୍ତ୍ରଣକାରୀ

ତାଙ୍କୁ ଚିହ୍ନାଇଲେ ନାହିଁ । ସେ ବ୍ୟକ୍ତିଙ୍କର ବେଶଭୂଷାରେ ବିଶେଷ ପରିପାଟୀ ନ ଥିଲା । ସେ ନିଜେ ମଧ୍ୟ ମନ୍ତ୍ରୀଙ୍କ ନିକଟକୁ ଅଗ୍ରସର ହୋଇ ଆସିବାକୁ ଶଙ୍କିତ ହେଉଥିଲେ । କିନ୍ତୁ ମନ୍ତ୍ରୀ ତାଙ୍କୁ ପଚାରିଲେ, "ଆପଣ କିଏ ?" ସେ ନମ୍ରସ୍ୱରରେ ଉତ୍ତର ଦେଲେ, "ମୁଁ ଜଣେ ଚାଷୀ ।" ତାହା ଶୁଣି ମନ୍ତ୍ରୀ କହିଲେ, "ଓ, ଆପଣ ଚାଷୀ ! ଏତେ ପଛରେ ବସିଛନ୍ତି ଯେ ? ଆପଣଙ୍କ ଆସନ ତ ସର୍ବ ପ୍ରଥମେ ହେବାର କଥା । ଆଜି ଏ ଭୋଜିରେ ଆମେ ସମସ୍ତେ ଯାହା ଯାହା ଖାଇବୁ, ସବୁ ତ ଆପଣଙ୍କ ତିଆରି ପଦାର୍ଥ ।"

ମନ୍ତ୍ରୀଙ୍କ କଥାରେ ସମସ୍ତଙ୍କ ଦୃଷ୍ଟି କୃଷକ ଉପରେ ପଡ଼ିଲା । କୃଷକ ତାହା ଦେଖି ଲଜ୍ଜାରେ ନଇଁଗଲା । ମନ୍ତ୍ରୀ ତା ମନର ଅବସ୍ଥା ବୁଝିପାରି କହିଲେ, "ଚାଷୀ ଭାଇ, ଏ ଯୁଗର ସମାଜ ସଂଗଠନରେ ଆପଣ ପଛକୁ ପଡ଼ି ଯାଇଛନ୍ତି । ଆମେ ସବୁ ଆପଣଙ୍କ ଆଗରେ ସ୍ଥାନ ଅଧିକାର କରି ବସିଛୁ । ସମାଜରେ ଆମର ଅବଶ୍ୟ ସ୍ଥାନ ଅଛି । ଡାକ୍ତର ନ ଥିଲେ, ରୋଗ ନିବାରଣ କରିବା ଅସମ୍ଭବ ହୋଇ ପଡ଼ନ୍ତା । ଅନେକ ମୂଲ୍ୟବାନ୍ ଜୀବନ ଅକାଳରେ ନଷ୍ଟ ହୋଇଯାନ୍ତା । ଚିକିତ୍ସକମାନେ ରୋଗ ବ୍ୟାଧିରୁ ମନୁଷ୍ୟଙ୍କୁ ରକ୍ଷା କରୁଛନ୍ତି । ସେଥିପାଇଁ ସେମାନେ ନମସ୍ୟ ।"

ସେ ଆହୁରି କହିଲେ, "ପୋଲିସ କର୍ମଚାରୀବର୍ଗ ରାଜ୍ୟରେ ଶାନ୍ତି ସ୍ଥାପନ କରିବାରେ ଲାଗିଛନ୍ତି । ବିଚାରପତି ଅପରାଧୀ ପ୍ରତି ଦଣ୍ଡ ବିଧାନ କରିବା ଯୋଗେ ଲୋକେ ଅନ୍ୟାୟ ଅତ୍ୟାଚାରରୁ ବିରତ ହେଉଛନ୍ତି । ଓକିଲମାନେ ବିଚାରପତିଙ୍କ ଦକ୍ଷିଣ ହସ୍ତ କହିଲେ ଚଳେ । ସେମାନଙ୍କ ବ୍ୟତୀତ ଅନେକ ସାଧୁଲୋକ ହୁଏତ ଦଣ୍ଡରେ ଭାଗୀ ହୋଇଯାନ୍ତେ । ବ୍ୟବସାୟୀ ଗୋଷ୍ଠୀ ନ ଥିଲେ, ଆମମାନଙ୍କୁ ଅନେକ ବ୍ୟବହାର୍ଯ୍ୟ ପଦାର୍ଥ ମିଳନ୍ତା ନାହିଁ । କୌଣସି ଏକ

ସ୍ଥାନରେ ଉତ୍ପନ୍ନ ହେଉଥିବା ଦ୍ରବ୍ୟ ଅପର ସ୍ଥାନମାନଙ୍କୁ ପିବାରେ ଘୋର ଅନ୍ତରାୟ ଘଟନ୍ତା । ସମାଜରେ ଯଦି ଶିକ୍ଷକ ନ ଥାନ୍ତେ, ଆମେମାନେ ସମସ୍ତେ ମୂର୍ଖ ହୁଅନ୍ତେ । ସେହିମାନେହିଁ ଅନ୍ଧକୁ ଚକ୍ଷୁ ଦେଉଛନ୍ତି ଓ ଦେଶରୁ ଅଜ୍ଞାନ ଅନ୍ଧକାର ଦୂର କରିବାରେ ଲାଗିଛନ୍ତି । ଶିକ୍ଷକଙ୍କଠାରୁ ଯଥାର୍ଥ ଶିକ୍ଷା ପାଇ ନ ଥିଲେ, ଓକିଲ, ଡାକ୍ତର, ବାସ୍ତୁବିତ, ପୋଲିସ କର୍ମଚାରୀ, ମନ୍ତ୍ରୀ ପ୍ରଭୃତି ଆସନ୍ତେ କେଉଁଠାରୁ ?"

ମନ୍ତ୍ରୀ ସେତିକରେ କ୍ଷାନ୍ତ ନ ହୋଇ ପୁଣି କହିଲେ, "କୃଷୀ ଭାଇ, ଆମେମାନେ ସମାଜ ମଧ୍ୟରେ ଯେ ଯେତେ ଉଚ୍ଚ ଆସନରେ ବସୁ ନା କାହିଁକି, କେହି ଆପଣଙ୍କ ସହିତ ସମକକ୍ଷ ହୋଇ ପାରିବୁ ନାହିଁ । ସମଗ୍ର ମାନବ ସମାଜ ଆପଣଙ୍କ ଯୋଗେ ତିଷ୍ଠି ରହିଛି । ଆପଣ ନିଜ ସୁଖ ସ୍ୱାଚ୍ଛନ୍ଦ୍ୟରେ ଜଳାଞ୍ଜଳି ଦେଇ ଖାଦ୍ୟ ଉତ୍ପାଦନ କାର୍ଯ୍ୟରେ ଲାଗିଛନ୍ତି । ସେଥିରେ ଆପଣଙ୍କୁ ଯେ କେତେ ଶ୍ରମ ସ୍ୱୀକାର କରିବାକୁ ପଡ଼ୁଛି, ତାହା କିଏ ବୁଝୁଛି ? ଖରା ବର୍ଷା ଶୀତ ନ ମାନି ଆପଣ ଦିନରାତି ଖଟୁଛନ୍ତି । ବର୍ଷର ନଅ ମାସ ଆପଣ ବିଲରେ କଟାଉଛନ୍ତି ଓ ବାକି ତିନିମାସ ଖଳ ରେ ପଡ଼ି ରହୁଛନ୍ତି । ତାହାର ଫଳରେ ସିନା ଆପଣ ପୃଥିବୀକୁ ଅନ୍ନ ଯୋଗାଇ ପାରୁଛନ୍ତି । ସେହି ଅନ୍ନରେ ପାଳିତ ହୋଇ ମଧ୍ୟ ଆମେମାନେ ଆପଣଙ୍କୁ ଉପଯୁକ୍ତ ସମ୍ମାନ ଦେବାରେ କୁଣ୍ଠିତ ହେଉଛୁଁ ।"

କୃଷକ ନିଜର ଏତେ ପ୍ରଶଂସା ଶୁଣି ଲଜ୍ଜିତ ହୋଇ ପଡ଼ୁଥିଲା । ତଥାପି ମନ୍ତ୍ରୀ କହିଲେ, "କୃଷକ ଭାଇ, କୃଷିର ମର୍ଯ୍ୟାଦା ଲୋକେ ଏ ପର୍ଯ୍ୟନ୍ତ ବୁଝି ନ ଥିଲେ । ମାତ୍ର ବର୍ତ୍ତମାନ ଆପଣଙ୍କ ଯୁଗ ଆସୁଛି । ଯେ କୃଷିରେ ମନ ପ୍ରାଣ ନିୟୋଜିତ କରିବ, ସେ ସମାଜରେ ବଡ଼

ହେବ । କୃଷିରେହିଁ ପୃଥିବୀ ବଞ୍ଚିରହିଛୁ । କୃଷି କାର୍ଯ୍ୟରେ ହେଳା କରିବା ଦ୍ୱାରା ସମାଜ ଧ୍ୱଂସ ପାଇଯିବ । ଆମେ ସମସ୍ତେ କ୍ରମେ ଆପଣଙ୍କ ଅଡ଼କୁ ଗତି କରୁଛୁ । ଆପଣ ଦେଖୁଥିବେ ଏବେ କଲଟର, କ ବାରିଷ୍ଟରପତି, କ ବଡ଼ ବଡ଼ କର୍ମଚାରୀ, ସମସ୍ତେ ନିଜ ନିଜ ହାତରେ କୃଷିକାର୍ଯ୍ୟ ଆରମ୍ଭ କଲେଣି । କହନ୍ତୁ, ଆପଣ ବଡ଼, ନା ସେମାନେ ବଡ଼ ?"

## ପ୍ରଶ୍ନ

୧ । କୃଷକ ଭୋଜରେ ଅନ୍ୟମାନଙ୍କ ସଙ୍ଗେ କାହିଁକି ସ୍ୱଚ୍ଛନ୍ଦ ଭାବରେ ମିଶି ପାରିଲା ନାହିଁ ?

୨ । "କହନ୍ତୁ, ଆପଣ ବଡ଼, ନା ସେମାନେ ବଡ଼"—ମନ୍ତ୍ରୀ ଏ କଥା କହିବାର ଅଭିପ୍ରାୟ କଣ ?

୩ । କଣ୍ଠାଗତପ୍ରାଣ, ଗତି କରିବ, ସ୍ଥାନ ଅଧିକାର କର, ଅକାଳରେ, ନମ୍ର, ସିନା, କୁଣ୍ଠିତ, ନମସ୍ୟ—ଲଗାଇ ବାକ୍ୟ ରଚନା କର ।

୪ । ନିମନ୍ତ୍ରଣ ଓ ନିମନ୍ତ୍ରିତ ମଧ୍ୟରେ ଯେପରି ସମ୍ପର୍କ, ଲିଖିତ ଶବ୍ଦମାନଙ୍କର ସେହି ସମ୍ପର୍କ ଥିବା ଶବ୍ଦସବୁ କହ :—ଧ୍ୱଂସ, ଉପଯୁକ୍ତ, ଶ୍ରମ, ଉତ୍ପାଦନ, ନଷ୍ଟ, ଚିନ୍ତା ।

---

# ଭୁବନେଶ୍ବର

କଟକରୁ ରେଲ୍ ପଥରେ ଦକ୍ଷିଣ ଦିଗକୁ ଯିବାବେଳେ, ପନ୍ଦର ଷୋଳ ମାଇଲ୍ ପରେ, ଅସଂଖ୍ୟ କୋଠାଘର ଏକାଠି ଦେଖାଯାଏ । ସେସବୁ ଘର ଓଡ଼ିଶା ରାଜ୍ୟର ନୂତନ ରାଜଧାନୀ ଭୁବନେଶ୍ୱର ନିକଟରେ ଅବସ୍ଥିତ । ମାତ୍ର ରାଜଧାନୀର ସମସ୍ତ ଘର

ଅନ୍ଧୁର ତଥର ହୋଇ ନାହିଁ, ଅନେକ ଘର ନିର୍ମିତ ହେବାକୁ ଅଦ୍ୟାପି ବାକି ଅଛି । ରାଜଧାନୀ ସମୀପରେ ବ୍ୟୋମଯାନ ପୀଠ ରହିଛି । କଲିକତା ଓ ମାନ୍ଦ୍ରାଜ ମଧ୍ୟରେ ଗୃଲୁଥିବା ବ୍ୟୋମଯାନ ସବୁ ସେଠାରେ ଓହ୍ଲାଇ କିଛି ସମୟ ଅପେକ୍ଷା କରି ପୁଣି ଆକାଶ ମାର୍ଗରେ ଗୃଲେ । ଏହି ଦୁଇଗୋଟି କାରଣ ଯୋଗେ ଭୁବନେଶ୍ୱର ବର୍ତ୍ତିମାନ ଲୋକ ସମାଜରେ ଖ୍ୟାତିଲାଭ କରଅଛି ।

କିନ୍ତୁ ଭୁବନେଶ୍ୱରର ଖ୍ୟାତି ଏତେ ନୂତନ ନୁହେ । ତେର ଶହ ବର୍ଷ ପୂର୍ବରୁ ତାହା ଉତ୍କଳ ଇତିହାସରେ ସ୍ଥାନ ପାଇଅଛି । ଅତି ପ୍ରାଚୀନ କାଳରୁ ନନ୍ଦବଂଶର ରାଜତ୍ୱ ପୂର୍ବରୁ ତାହା ଉତ୍କଳର ରାଜଧାନୀରୂପେ ପ୍ରସିଦ୍ଧ ଥିଲା । ସେତେବେଳେ ତାର ନାମ ଥିଲା ଏକାମ୍ର କାନନ । ଜନ୍ମେଜୟ ଉତ୍କଳକୁ ଗୁପ୍ତସାମ୍ରାଜ୍ୟରୁ ସ୍ୱାଧୀନ କରି ସେଠାରେ କେଶରୀ ବଂଶର ରାଜତ୍ୱ ପ୍ରତିଷ୍ଠା କଲେ । ସେତେବେଳେ ସେହି ନୂତନ ସ୍ୱାଧୀନ ରାଜ୍ୟର ରାଜଧାନୀ ମହାନଦୀ ଓ ବିରୂପା ମଧ୍ୟସ୍ଥ ଚୌଦ୍ୱାରରେ ସ୍ଥାପିତ ହେଲା । ତାର ଭଗ୍ନାବଶେଷ ଅଦ୍ୟାପି ରହିଅଛି ।

କେଶରୀ ବଂଶର ରାଜାମାନେ ଶୈବ ଥିଲେ । ସୁତରାଂ ଉତ୍କଳରେ ଶିବ ଉପାସନା ପ୍ରଚଳନ କରିବା ସେମାନଙ୍କର ପ୍ରଧାନ କାର୍ଯ୍ୟ ହେଲା । ପୂର୍ବରୁ ଏକାମ୍ର କାନନରେ ଜୈନ ଓ ବୌଦ୍ଧଧର୍ମର କେନ୍ଦ୍ର ରହିଥିଲା । ତାର ଚିହ୍ନ ବର୍ତ୍ତିମାନ ସୁଦ୍ଧା ଖଣ୍ଡଗିରି ଓ ଉଦୟଗିରିରେ କିଛି କିଛି ଦେଖାଯାଏ । ଉକ୍ତ ଦୁଇଧର୍ମର ଲୋପ ସାଧନ କରିବା ନିମନ୍ତେ ଯଯାତି କେଶରୀ ସେହି ସ୍ଥାନରେହିଁ ଶିବକ୍ଷେତ୍ର ସ୍ଥାପନ କଲେ । ବର୍ତ୍ତିମାନ ଭୁବନେଶ୍ୱରରେ ଯେଉଁ ପ୍ରଧାନ ଲିଙ୍ଗରାଜ ମନ୍ଦିର ଅଛି, ତାର ନିର୍ମାଣ କାର୍ଯ୍ୟ ଆରମ୍ଭ କରାଗଲା । ତାଙ୍କ ଅନ୍ତେ ଲଲାଟେନ୍ଦୁ କେଶରୀ ୬୬୭ ମସିହାରେ ସେହି କାର୍ଯ୍ୟ ପୂର୍ଣ୍ଣ କଲେ ।

ଲିଙ୍ଗରାଜଙ୍କ ମନ୍ଦିର ନିର୍ମାଣ ଶେଷ ହେଲା ଓ 'ଏକାମ୍ର କାନନ' ନାମ ବଦଳି ରାଜଧାନୀର ନାମ 'ଭୁବନେଶ୍ୱର' ରଖାଗଲା । ଏଥିଉଁ ଲଲାଟେନ୍ଦୁ ନଗର ନିର୍ମାଣ କାର୍ଯ୍ୟରେ ମନ ଲଗାଇଲେ । ଉକ୍ତ ନଗରରେ ସେ ସାତଗୋଟି ସାଗ୍ନି ଓ ବୟାଳିଶ ଗୋଟି ଦାଣ୍ଡ ସ୍ଥାପନ କଲେ । ଲିଙ୍ଗରାଜଙ୍କ ମନ୍ଦିର ନିକଟରେ ଦକ୍ଷିଣ ଦିଗକୁ ଗୋଟିଏ ରାଜପ୍ରାସାଦ ନିର୍ମିତ ହେଲା । ଲଲାଟେନ୍ଦୁ ସେଥିରେ ବାସ କଲେ । କିନ୍ତୁ ସେ ବେଳେ ବେଳେ ନିଜ ଉଆସରୁ ଯାଇ ଉଦୟଗିରିର ରାଣୀହଂସପୁରରେ ରହୁଥିଲେ ବୋଲି ପ୍ରବାଦ ଅଛି ।



ଏବେ ସୁଦ୍ଧା ଭୁବନେଶ୍ୱରରେ ଅନେକ ମନ୍ଦିର ମୁଣ୍ଡ ଟେକି ଠିଆହୋଇ ରହିଛି । କିନ୍ତୁ ବହୁ ମନ୍ଦିର ଭାଙ୍ଗି ପଡ଼ିଯାଇଛି । ସେମାନଙ୍କ ମଧ୍ୟରୁ କେତେକର ସତ୍ତା ଏକାବେଳକେ ଲୋପ ପାଇଯାଇଛି । ମାତ୍ର ସେ ସକଳ ମନ୍ଦିର ଯେ ଲଲାଟେନ୍ଦୁଙ୍କ ରାଜତ୍ୱକାଳରେ ନିର୍ମିତ ହୋଇଥିଲା, ତା ନୁହେ । ଅନେକ ମନ୍ଦିର ପରବର୍ତ୍ତୀ ରାଜାମାନେ ନିର୍ମାଣ କରାଇଥିଲେ । କେବଳ ଲିଙ୍ଗରାଜଙ୍କ ମନ୍ଦିରଟି ଲଲାଟେନ୍ଦୁଙ୍କ କୀର୍ତ୍ତି । ଉତ୍କଳରେ ଯେତେ ମନ୍ଦିର ଅଛି ଓ ଏକ ସମୟରେ ଥିଲା, ଲିଙ୍ଗରାଜଙ୍କ ମନ୍ଦିର ସର୍ବାପେକ୍ଷା ପୁରାତନ । ଲଲାଟେନ୍ଦୁଙ୍କ ନିର୍ମିତ ମନ୍ଦିରଟି

ଅଦ୍ୟାପି ସେହିପରି ରହିଅଛି । କେତେକ ବର୍ଷ ପୂର୍ବେ ତହିଁରେ କେବଳ କେତେକ ମରାମତି କାର୍ଯ୍ୟ ହୋଇଥିଲା ।

ଶିଳ୍ପକଳାରେ ଭୁବନେଶ୍ୱର କେବଳ ଉତ୍କଳ ତଥା ଭାରତରେ ନୁହେଁ, ସମଗ୍ର ପୃଥିବୀରେ ବିଖ୍ୟାତ । ସେଠାରେ ଥିବା ମୁକ୍ତେଶ୍ୱର ମନ୍ଦିରର କଳା ପରିପାଟୀ ଅତି ବିଚିତ୍ର । ମନ୍ଦିର ଦେହରେ ନାନା ଲତାପତ୍ର ଓ ଜୀବ ଜନ୍ତୁର ଚିତ୍ର ଦେଖିଲେ ଆଜି ମଧ୍ୟ ଲୋକେ ମୁଗ୍ଧ ହେଉଛନ୍ତି । ତା ଛଡ଼ା ଯୋଗୀଋଷି, ଗୁରୁ, ଶିଷ୍ୟ, ସୈନ୍ୟ ସାମନ୍ତ, ଯୁଦ୍ଧ ଅଭିଯାନ, ରାଜଦରବାରର ଚିତ୍ରମାନ ମଧ୍ୟ ପଥରରେ ଖୋଳା ହୋଇଥିଲା । ସେ ସବୁ ଅଦ୍ୟାପି ଜୀବନ୍ତ ପରି ରହିଛି । ବର୍ତ୍ତମାନ ଲୋକେ କେତେକ ମନ୍ଦିରରେ ସୁଦ୍ଧା ପ୍ରବେଶ କରୁନାହାନ୍ତି । ତଥାପି ସେ ସବୁର ସୌନ୍ଦର୍ଯ୍ୟ ନଷ୍ଟ ହୋଇ ନାହିଁ ।

ଭୁବନେଶ୍ୱରରେ ମନ୍ଦିରମାନଙ୍କର ଗୋଟାଏ ବଡ଼ ଦରବାର ବସିଛି ବୋଲି କୁହାଯାଇପାରେ । ଅସଂଖ୍ୟ ଛୋଟ ଛୋଟ ମନ୍ଦିର ମଧ୍ୟରେ ଲିଙ୍ଗରାଜଙ୍କ ମନ୍ଦିରଟି ଆକାଶ ଭେଦ କରି ଦଣ୍ଡାୟମାନ । ବେଢ଼ା ପ୍ରାଙ୍ଗଣରୁ ତାର ଉଚ୍ଚତା ଏକଶହ ଷାଠିଏ ଫୁଟ । ବେଢ଼ାର ଆୟତନ ସାଢ଼େ ଚାରି ଏକର । ସୁତରାଂ ଲିଙ୍ଗରାଜଙ୍କ ମନ୍ଦିରଟିକୁ ଦରବାରର ସଭାପତି ମଣିଲେ, ଅସଙ୍ଗତ ହେବ ନାହିଁ । ସଭାପତିଙ୍କ ନିକଟରେ କର୍ମଚାରୀ, ପାର୍ଶ୍ୱଚର, ଅନୁଚର ପ୍ରଭୃତି ଥାଆନ୍ତି । ସେହିପରି ଲିଙ୍ଗରାଜଙ୍କ ବେଢ଼ା ମଧ୍ୟରେ ଷାଠିଏ, ସତୁରି ପର୍ଯ୍ୟନ୍ତ ଛୋଟ ଛୋଟ ଦେଉଳ ରହିଛି । ବେଢ଼ା ବାହାରେ ବହୁଦୂରବ୍ୟାପୀ ଅନେକ ଭିନ୍ନ ଭିନ୍ନ ମନ୍ଦିର ଠିଆ ହୋଇଛି । ସେମାନଙ୍କୁ ମନ୍ଦିର ଦରବାରର ସାଧାରଣ ସଦସ୍ୟ ବୋଲି ମନେ କରାଯାଇପାରେ ।

ଭୁବନେଶ୍ୱରର ବହୁ ମନ୍ଦିର କାଳକ୍ରମେ ଭାଜି ଭୂଗର୍ଭରେ ଲୀନ ହୋଇଯାଇଛି । ଚାଷୀମାନେ ବିଲରେ ହଳ କଲାବେଳେ

ମୂର୍ତ୍ତି ପଥର ଖଣ୍ଡମାନ ସମୟ ସମୟରେ ମାଟି ତଳୁ ବାହାରିବାର ଦେଖାଯାଏ । ଶିଶୁପାଳ ଗଡ଼ ଯେଉଁଠାରେ ଥିଲା, ବର୍ତ୍ତମାନ ତାହା ଖୋଳା ଯିବା ଯୋଗେ ମାଟିଭିତରୁ ଅନେକ ପୁରୁଣା ଜିନିଷ ବାହାରୁଛି । ତେର ଶହ ବର୍ଷ ପୂର୍ବେ ଆମ ପୂର୍ବ ପୁରୁଷମାନେ ସେପରି ଏକ ଗଡ଼ ତୋଳି ପାରିଥିଲେ; ତାହା ଆମ ପକ୍ଷରେ କମ ଗର୍ବର ବିଷୟ ନୁହେ । ଆମ ପ୍ରାଚୀନ ଇତିହାସ ଅତ୍ୟନ୍ତ ଗୌରବମୟ । ବିନ୍ଦୁସରୋବର ଗୋଟିଏ ପ୍ରକାଣ୍ଡ ଜଳାଶୟ । ତାହା ମଧ୍ୟ ଅତି ପ୍ରାଚୀନ । ଭାରତର ସକଳ ତୀର୍ଥରୁ ପାଣି ଅଣାଯାଇ ସେଥିରେ ଢଳା ଯାଇଥିଲା ବୋଲି ପ୍ରବାଦ ଅଛି ।

## ପ୍ରଶ୍ନ

୧ । ଭୁବନେଶ୍ୱର ନାମ କେବେ କିପରି ଭାବରେ ଦିଆଗଲା ?

୨ । ଲିଙ୍ଗରାଜ ମନ୍ଦିର ବିଷୟରେ ଯାହା ଜାଣ, କହ ।

୩ । ମନେ କର ତୁମେ ଭୁବନେଶ୍ୱର ଦେଖି ଆସିଛ । ତୁମେ ଯାହା ଦେଖିଛ, ବର୍ଣ୍ଣନା କର ।

୪ । ଆଗରୁ ବଂଶରେ ଯେଉଁମାନେ ଜନ୍ମି ମରି ଯାଇଛନ୍ତି, ଯାହାର ଗୌରବ ଅଛି, ଯେ ପାଖରେ ରହେ, ଯେ ଶିବଙ୍କୁ ଉପାସନା କରେ, ଯାହାର ସଂଖ୍ୟା କରି ହେବ ନାହିଁ, ଯାହା ପରେ ଘଟିଛି—ପ୍ରତ୍ୟେକଟି ପାଇଁ ଏ ପାଠରେ ବ୍ୟବହୃତ ହୋଇଥିବା ପଦ କହ ।

୫ । ଅଦ୍ୟାପି, ଜୀବନ୍ତ, ପ୍ରାଚୀନ, ସଦସ୍ୟ, ଦରବାର, ଲୀନ, ମର୍ମର, ସୌନ୍ଦର୍ଯ୍ୟ, ଜଳାଶୟ, ଅଯତନ, ଉଚ୍ଚତା—ଲଗାଇ ବାକ୍ୟ ରଚନା କର ।

---

## ରାଜସିଂହାସନ ନା ଜୀବେ ଦୟା ?

ରାଜହର୍ମ୍ୟ ଉପବନେ        ସିଦ୍ଧାର୍ଥ ବସି ବିଜନେ
କେ ଜାଣିବ କି ଭାବନା ଭାଳନ୍ତି ଚିତ୍ତେ;
ବସି ଡାଳେ ପରଭୃତ        ସତେ ବା ଢାଳେ ଅମୃତ,
ଉପବନ ସାରା ପ୍ରତିଧ୍ୱନିତ ଗୀତେ;
ଆହା କି ସେ ସୁନ୍ଦର ଛବି !
ପାଷାଣ ହେଲେ ତ ଦେଖି ଯାଆନ୍ତା ଦ୍ରବି ।

ହଂସପନ୍ତି କଳରବେ        ଉଡ଼ନ୍ତି ଉପରେ ନଭେ,
ପ୍ରତେ ହୁଏ ସତେ ଏକ ଶୁକ୍ଳ ବଉଦ;
ପଡ଼ନ୍ତେ ପଲକେ ଛାଇ,        ଦେଖନ୍ତି ସିଦ୍ଧାର୍ଥ ଚାହିଁ,
ବିବିଧ ଭାବନା ମନେ ଲଭନ୍ତି ମୁଦ;
ସହସା କି ଶୁଭିଲା ରଡ଼ି,
ଅକାଶୁଁ ମରାଳ ପକ୍ଷୀ ପଡ଼ିଲା ଝଡ଼ି ।

ଶରବିଦ୍ଧ ହଂସ ଦେଖି        ଶର କାଢ଼ିଲେକ ସେଥୁ,
ଆଣି ସରୋବରୁ ଜଳ ସିଞ୍ଚିଲେ ମୁଖେ;
ମରୁ ମରୁ ଗଲା ଜୀଇ        ହଂସ, କି ନ କଲା ବିଧି,
ଆନନ୍ଦେ ସିଦ୍ଧାର୍ଥ ଟେକି ଧଇଲେ ବୁକେ;
ପକ୍ଷୀ ଜନ୍ମ ପାଇଛୁ ସିନା,
ଜୀବ ପ୍ରତି ଜୀବ ଦୟା କି ଲା ସେ ଦେନା ।

ହୃଷ୍ଟ ସିଦ୍ଧାର୍ଥ ବଦନ        କରେ ହଂସ ନିରୀକ୍ଷଣ,
କୃତଜ୍ଞ ଚାହାଣି ତୋର ଦଶଇଁ ତାର;
ନରେଶ ସିଦ୍ଧାର୍ଥ ସୁଖେ        ଗାନ୍ଧ ତା ଚୁମ୍ବନ୍ତି ମୁଖେ
ତୁହେଁ ଦୁହଙ୍କର ସତେ ସୁହୃଦ ସାର;

ଡୋର ଏବେ ଯିବ କି ଛିଡ଼,
ଦେବଦତ୍ତ ଆସି ହଂସେ ଧରନ୍ତି ଭିଡ଼ ।



ବଖାଣିଲେ ଦେବଦତ୍ତ, "ଭାଇ, କହୁଅଛି ସତ,
ଏ ହଂସ ମରୁଛି ପ୍ରାଣେ ମୋହର ଶରେ;
ନ୍ୟାୟେ ଏହା ମୋ ସମ୍ପତ୍ତି, ଦିଅ ହେ ମୋତେ ଝଟିତି,
ନେଇ, ଆନଃହଂସ ପଛେ ଧାଇଁବି ଖରେ;
ମୃଗୟା ମୋ ଅଟଇ କାର,
ରାଜଧର୍ମ୍ମ ଅଛି ଆଉ କି ସୁଖ ସାର ?"

ସିଦ୍ଧାର୍ଥ ଅନୁଜେ ଧୀରେ  କହୁଲେ ବୁଝାଇ ଗୀରେ
"ଭାଇ ଭାଗ ଆମେ ଏଥି ବାଣ୍ଟିବା ଅଜ,
ତୁ ନେ ପିତୃରାଜ୍ୟ, ମୋତେ  ଦିଅ ହଂସ ହସ୍ତଗତେ,
ପିତା ମାଆଙ୍କନେବେ ଅମେ ହୋଇଲେ ରାଜ;
ମରିଲେ ତୁ ମାରିଲୁ ପ୍ରାଣେ,
ମୁଁ ଜୀବ ଦେଇଛୁ, ତୋତେ ଅର୍ପିବି କେମନ୍ତେ ?
ଏକ ଦଣ୍ଡେ ଶତ ଜୀବ  ମାରିପାରେ ଯେ ଇଚ୍ଛିବ,
ଗୋଟିଏ କେ ଶତ ବର୍ଷେ ପାରିବ ସୃଜି ?
ଜୀବେ ଦୟା ବଡ଼ କଥା  ମନେ ରଖିଥିବୁ ସଦା,
ରାଜା ହେବୁ, ଭାଇ, ପ୍ରଜା ଅନ୍ତର ବୁଝି;
ଦେବଦତ୍ତ ଶୁଣିଲା କାନେ,
ଗୃହକୁ ଗଲା, ମରାଳଟି ରହିଲା ପ୍ରାଣେ ।

## ପ୍ରଶ୍ନ

୧ । ହଂସଟି ତଳେ କାହିଁକି ଖସିପଡ଼ିଲା ?
୨ । ସିଦ୍ଧାର୍ଥ ଭାଇଭାଗ କପରି ବାଣ୍ଟିଲେ ?
୩ । ସିଦ୍ଧାର୍ଥ ଓ ଦେବଦତ୍ତ ଦୁହିଙ୍କ ଚରିତ୍ର ତୁଳନା କର ।
୪ । ବିଜନ, ପଲକେ, ସିଞ୍ଚିଲେ, ନିରୀକ୍ଷଣେ, ଗୃହାଣି, ନ୍ୟାୟୁ, ମୃଗୟା, ସୃଜି, କୃତଜ୍ଞ—ଲଗାଇ ବାକ୍ୟ ରଚନା କର।
୫ । ଏ ପଦ୍ୟରେ ନିମ୍ନଲିଖିତ ଶବ୍ଦମାନଙ୍କ ପରିବର୍ତ୍ତେ କି କି ସାଧୁଶବ୍ଦ ବ୍ୟବହୃତ ହୋଇଛି ?
ରଜାଘର, ବଗିଚା, କୋଇଲି, ପଥର, ତରଳ, ଧଳା, ପୋଖରୀ, ଦେହ, ସାନଭାଇ, ଦେଖ ।

# ମରୁହ୍ରଦ

ଆମ ଓଡ଼ିଶାର ଚିଲିକାକୁ ସାଧାରଣ ଭାଷାରେ ହ୍ରଦ କୁହାଯାଉଥିଲେ ସୁଦ୍ଧା, ତାହା ପ୍ରକୃତରେ ହ୍ରଦ ନୁହେ । ଭୂଗୋଳରେ ହ୍ରଦର ସଂଜ୍ଞା ପଢ଼ି, ମାନଚିତ୍ରରେ ଚିଲିକାର ଅବସ୍ଥାନ ଦେଖିଲେ, ଏ କଥାର ସତ୍ୟାସତ୍ୟ ଉପଲବ୍ଧି କରହେବ । ତାର ସମୁଦ୍ର ସହିତ ଯୋଗଥିବା କାରଣରୁ ତାକୁ ହ୍ରଦ ଆଖ୍ୟା ଦିଆଯାଇ ପାରିବ ନାହିଁ ।

କିନ୍ତୁ ପୃଥିବୀରେ ନାନା ସ୍ଥାନରେ ଅନେକ ହ୍ରଦ ରହିଛି । ମରୁହ୍ରଦ ସେମାନଙ୍କ ମଧ୍ୟରୁ ଗୋଟିଏ ହେଲେ ସୁଦ୍ଧା, ଅନ୍ୟାନ୍ୟ ହ୍ରଦଠାରୁ ତାର ବିଶେଷ ପାର୍ଥକ୍ୟ ଥିବାର ଦେଖାଯାଏ । ତା ନାମ ମାତ୍ର ଶୁଣିବା ପୂର୍ବେ ଲୋକଙ୍କ ମନରେ ଧାରଣା ଜନ୍ମିଥିଲା ଯେ ତା ପାଣି ଓ ସେଥିରୁ ବାହାରୁଥିବା ବାଷ୍ପ ମାରାତ୍ମକ ଅଟେ । ସେଥିପାଇଁ ଅନେକ ତା ନିକଟକୁ ଯିବାକୁ କୁଣ୍ଠିତ ହେଉଥିଲେ । କେହି କେହି ତାହା ଦେଖିବାକୁ ଯାଇ, ଦୂରରୁ ନମସ୍କାର କରି, ଭୟରେ ଫେରି ଆସିଥିବାର ସୁଦ୍ଧା ଶୁଣାଯାଏ । ମାତ୍ର ପ୍ରକୃତରେ ଏତେ ଭୟର କାରଣ କିଛି ନାହିଁ ।

ଏବେ ଗତ କେତେକ ବର୍ଷ ହେଲା ପାଲେଷ୍ଟାଇନ ରାଜ୍ୟରେ ଭୀଷଣ ଗଣ୍ଡଗୋଳ ଲାଗିଛି । ଇହୁଦୀ ଜାତି ସେଠାରେ ନିଜର ସ୍ୱତନ୍ତ୍ର ରାଷ୍ଟ୍ର ଗଢ଼ିବାକୁ ଯିବା ଫଳରେ ସେହି ଗଣ୍ଡଗୋଳ ଉପୁଜିଛି । ମୁସଲମାନମାନେ ତାର ଘୋର ବିରୋଧ କରୁଛନ୍ତି । ଏହି ଉଭୟ ଜାତି ମଧ୍ୟରେ ପାଲେଷ୍ଟାଇନର ଗଣ୍ଡଗୋଳ ନୂତନ ନୁହେ, ବହୁକାଳ ହେଲା ଚାଲିଆସିଛି । ମରୁ ସାଗର ସେହି ପାଲେଷ୍ଟାଇନ ରାଜ୍ୟରେ ଅବସ୍ଥିତ ।

ପୃଥିବୀ ପୃଷ୍ଠରେ ମରୁସାଗର ଅପେକ୍ଷା ବହୁତ ବଡ଼ ବଡ଼ ହ୍ରଦ ରହିଥିଲେ ସୁଦ୍ଧା, ମରୁସାଗରର ବିଶେଷତ୍ୱ ଅନ୍ୟ କାହାରି ନାହିଁ ।

ସେଥିରେ ମାଛ ବା ଅନ୍ୟ କୌଣସି ଶ୍ରେଣୀର ଜଳଚର ଜୀବ ରହି ପାରନ୍ତି ନାହିଁ । ତା ତୀର ଭୂମିରେ ବୃକ୍ଷଲତା ନ ଥିବା ଯୋଗେ ସ୍ଥଳଚର ଜୀବଜନ୍ତୁଙ୍କ ପକ୍ଷେ ସେଠାରେ ବାସ କରିବା ଅସମ୍ଭବ । ସାଧାରଣତଃ ହ୍ରଦ ନିକଟରେ ନାନାପ୍ରକାର ପକ୍ଷୀ ଦେଖାଯାନ୍ତି; କିନ୍ତୁ ମରୁହ୍ରଦ ଅଞ୍ଚଳରେ କୌଣସି ପକ୍ଷୀ ନାହାନ୍ତି । ତାର କାରଣ ମରୁହ୍ରଦର ଜଳ ଅତ୍ୟନ୍ତ ଲବଣାକ୍ତ । ସମୁଦ୍ର ପାଣିରେ ଯେତେ ଲବଣ ମିଶି ରହିଛି, ମରୁହ୍ରଦରେ ତା ତୁଳନାରେ ଦ୍ୱିଗୁଣ ଅଛି । ଏପରି କି, ତା ପାଣିରେ ହାତ ବୁଡ଼ାଇ ବାହାର କରି ଆଣିଲେ, କିଛିକ୍ଷଣ ପରେ ଦେଖାଯିବ ଯେ, ପାଣି ବାଷ୍ପାକାରରେ ଉଡ଼ିଯାଇଛି ଓ ହାତ ଉପରେ ଲବଣର ଗୋଟିଏ ପତଳା ସ୍ତର ପଡ଼ି ରହିଛି । କେହି ଇଚ୍ଛା କଲେ, ସେ ଉପାୟରେ ମଧ୍ୟ କିଛି ଲବଣ ଅନାୟାସରେ ସଂଗ୍ରହ କରିପାରେ ।

ସେ ହ୍ରଦକୁ ଏତେ ପରିମାଣରେ ଲବଣ କିପରି ଆସିଲା, ଏ ପ୍ରଶ୍ନ ସ୍ୱତଃ ମନରେ ଜାତ ହୁଏ । ଖ୍ରୀଷ୍ଟାନ ଧର୍ମାବଲମ୍ବୀମାନଙ୍କର ପବିତ୍ର ଜର୍ଡନନଦୀ ସେହି ହ୍ରଦରେ ଯାଇ ପଡ଼ିଛି । ନଦୀଟି ଆକାରରେ ବଡ଼ ନ ହେଲେ ସୁଦ୍ଧା, ଲବଣଯୁକ୍ତ ପାର୍ବତ୍ୟ ମାର୍ଗରେ ପ୍ରବାହିତ ହେବା ଯୋଗେ ପ୍ରଚୁର ଲବଣ ବହି ନେଇ ହ୍ରଦରେ ଜମେଇ ଦେଉଛି । ସୁତରାଂ ତାର ଜଳ ଅତ୍ୟନ୍ତ ଗାଢ଼ । ସେଥିରେ ନୌକା ବୁଡ଼ି ଯିବାର ଆଶଙ୍କା ନ ଥାଏ । କିନ୍ତୁ ନୌକା ବିହାର ନିମନ୍ତେ କେହି ସେଠାକୁ ଯାଆନ୍ତି ନାହିଁ । ତା ବେଳା ଦେଶରେ କିଛି ସମୟ ଯାଇ ରହିଲେ, ଓଠ ଓ ଗଳା ଶୁଖିଯାଏ ଏବଂ ଚକ୍ଷୁରେ ଜ୍ୱାଳା ହୁଏ । ତଥାପି ସେ ଅଞ୍ଚଳର ଅଧିବାସୀମାନେ ତା ତୀରଭୂମିରୁ ଲବଣ ସଂଗ୍ରହ କରି ନିଅନ୍ତି ।

ମରୁହ୍ରଦ ଚତୁଃପାର୍ଶ୍ୱର ଦୃଶ୍ୟ ନିତାନ୍ତ ଭୀଷଣ । ହ୍ରଦଟି ପର୍ବତମାଳାଦ୍ୱାରା ବେଷ୍ଟିତ । ସେହି ପର୍ବତମାଳା ସହିତ ଦେଖିଲେ ତାହା ହ୍ରଦ ପରି ବୋଧହୁଏ ନାହିଁ, ବରଂ ଏକ ପ୍ରକାଣ୍ଡ କୂପ ସଦୃଶ ଦିଶେ । ପର୍ବତମାଳା ପୁଣି କେବଳ ଧାଡ଼ିଏ ପର୍ବତରେ ଗଠିତ ନୁହେ । ପଛକୁ ପଛ ଲାଗି ଅନେକ ପ୍ରସ୍ତ ପର୍ବତ ରହିଛି । ହ୍ରଦ ନିକଟରେ ଥିବା ପର୍ବତଗୁଡ଼ିକ କେବଳ ଅଙ୍ଗାରମୟ; ସେଥିରେ ଉଦ୍ଭିଦର ସତ୍ତା ନାହିଁ । କିନ୍ତୁ ଦୂରବର୍ତ୍ତୀ ପର୍ବତମାନଙ୍କରେ କେତେକ ଶ୍ରେଣୀର ଗୁଳ୍ମ ଦେଖାଯାଏ । ନିସ୍ତରଙ୍ଗ ହ୍ରଦର ଚତୁର୍ଦ୍ଦିଗରେ ଅନାବୃତ ଶୈଳଶ୍ରେଣୀର ବିକଟତା ଦର୍ଶକ ହୃଦୟରେ ଭୟର ସଞ୍ଚାର କରେ । ପକ୍ଷୀର କଳରବ ସୁଦ୍ଧା କାନରେ ପଡ଼େ ନାହିଁ । ପୃଥିବୀ ପୃଷ୍ଠର ମୃତ୍ତିକା ଶୁଷ୍କ; ସେଥିରେ ଘାସ ସୁଦ୍ଧା ଜନ୍ମିବା ଅସମ୍ଭବ । ସେପରି ଗୋଟାଏ ହ୍ରଦକୁ ଯେ ମରୁହ୍ରଦ ନାମ ଦିଆଯାଇଛି, ସେଥିରେ କିଛି ବିଚିତ୍ରତା ନାହିଁ ।

## ପ୍ରଶ୍ନ

୧ । ଲୁଣ ମିଳୁ ନ ଥିବା ରାଜ୍ୟରେ ମରୁହ୍ରଦର କି ଉପାଦେୟତା ହୁଅନ୍ତା ?

୨ । ମରୁହ୍ରଦର ଜଳ ଏତେ ଲବଣାକ୍ତ ହେବାର କାରଣ କଣ ?

୩ । ମୃତ୍ତିକା, ବିଚିତ୍ରତା, ସତ୍ତା, ସଞ୍ଚାର, ନିତାନ୍ତ, ସଂଗ୍ରହ, ଜଳଚର, ବିଶେଷତ୍ୱ, ପାର୍ଥକ୍ୟ, ସ୍ୱତନ୍ତ୍ର, କୁଣ୍ଠିତ—ଲଗାଇ ବାକ୍ୟ ରଚନା କର ।

୪ । ନିମ୍ନଲିଖିତ ଶବ୍ଦଗୁଡ଼ିକର ଅର୍ଥ କହ :—ଭୀଷଣ, ଦର୍ଶକ, ନିସ୍ତରଙ୍ଗ, ବେଷ୍ଟିତ, ପ୍ରଚୁର, ଲବଣାକ୍ତ, ଧର୍ମାବଲମ୍ବୀ, ଅନାୟାସ, ସ୍ଥଳଚର, ଅବସ୍ଥାନ ।

## ୧୯୩୪ ମସିହା ଭୂମିକମ୍ପ

୧୯୩୪ ମସିହା ଶୀତ ଋତୁରେ, ଦିନେ ମଧ୍ୟାହ୍ନ ସମୟରେ, ଆମ ଓଡ଼ିଶାରେ ସହସା ଗୋଟାଏ ବିଶେଷ ଘଟଣା ଘଟିଲା । ଘରେ ହଠାତ୍ କବାଟଗୁଡ଼ାକ ଦ୍ୱାରବନ୍ଧରେ ଧଡ଼ଧାଡ଼ ବାଜିଲା, କବାଟର ଶିକୁଳି ଝଣଝଣ ହେଲା, କାନ୍ଥରେ ଡେରି ହୋଇ ରହିଥିବା ଛତା, ବାଡ଼ି ଆଦି ତଳେ ପଡ଼ିଗଲା; ଘରମାନ ଲହରି ଉପରେ ନୌକା ପରି ଟଳମଳ ହୋଇଗଲା । ଲୋକେ ଠିଆ ହୋଇ ରହି ପାରିଲେ ନାହିଁ, ପଡ଼ିଯିବା ଭଳି ହେଲେ; ଗଛ ସବୁ ଦୋହଲିଲା, ଗୋରୁ, ଛେଳି ପ୍ରଭୃତି ଭୟରେ ଚିତ୍କାର କରି ଧାଇଁବାରେ ଲାଗିଲେ; କୁକୁରମାନେ ବିପଦ ଆଶଙ୍କା କରି ଭୁକିଲେ; ମାଆମାନେ ସନ୍ତାନ ସନ୍ତତିଙ୍କୁ କୁଣ୍ଢାଇ ଧରିଲେ ।

ପାଞ୍ଚ ସାତ ମିନିଟ କାଳ ଏହିପରି ଅଘଟଣମାନ ଘଟିବା ପରେ ପୁଣି ସବୁ ସ୍ଥିର ହେଲା । ଅନେକେ କହିଲେ, "ବଡ଼ ବଡ଼ ସହର-ମାନଙ୍କରେ ଯଦି ଏହି ପରିସ୍ଥିତି ଉପୁଜିଥିବ, ତାହାହେଲେ କୋଠା ଘରମାନ ଭାଙ୍ଗି ଯାଇଥିବ, ବହୁଲୋକ ମୃତ୍ୟୁମୁଖରେ ପଡ଼ିଥିବେ, ପ୍ରଚୁର ଧନ ସମ୍ପତ୍ତି ନଷ୍ଟ ହୋଇଥିବ । ଏପରି ଭୂମିକମ୍ପ ଆମ ଦେଶରେ କଦାପି ଘଟି ନ ଥିଲା ।" ପ୍ରକୃତରେ ଷାଠିଏ ସତୁରି ବର୍ଷ ବୟସର ବୁଢ଼ାମାନେ ସୁଦ୍ଧା ସେପରି ଗୋଟାଏ ଘଟଣା କେବେ ଘଟିଥିବା ସ୍ମରଣ କରିପାରିଲେ ନାହିଁ ।

ଦିନେ ଦୁଇଦିନ ପରେ ସମ୍ବାଦପତ୍ରମାନଙ୍କରେ ଭୂମିକମ୍ପର ବିବରଣ ପ୍ରକାଶ ପାଇଲା । ତାର ପ୍ରକୋପ ଉତ୍ତର ବିହାରରେ ବିଶେଷ ହୋଇଥିଲା ଏବଂ ଉତ୍ତର ବିହାର ମଧ୍ୟରେ ମୁଙ୍ଗେର ସହର ସେଥିରେ ଧ୍ୱଂସ ପାଇଗଲା । ସେ ସହରରେ ଲୋକେ ନିଜ ନିଜ

କାର୍ଯ୍ୟରେ ନିଯୁକ୍ତ ଥିଲେ । ଛାତ୍ର ଓ ଛାତ୍ରୀମାନେ ବିଦ୍ୟାଳୟରେ ପଢୁଥିଲେ, ବିଚାରାଳୟରେ ମାମଲା ମକଦ୍ଦମାର ବିଚାର ଚାଲିଥିଲା, ଦୋକାନ ବଜାରରେ କ୍ରୟ ବିକ୍ରୟ ହେଉଥିଲା, କେତେକ ଭୋଜନରେ ବସିଥିଲେ, କେହି କେହି ବା ଶୋଇଥିଲେ । ସେତେବେଳେ ହଠାତ୍ ଗୋଟାଏ ପ୍ରକାଣ୍ଡ ଗର୍ଜନ ଶୁଭିଲା । ଲୋକେ ମନେ କଲେ ସତେ ଅବା ମା ବସୁନ୍ଧରା ଯନ୍ତ୍ରଣାରେ କାତର ହୋଇ ଚିତ୍କାର କରୁଛନ୍ତି । ସଙ୍ଗେ ସଙ୍ଗେ ସମଗ୍ର ସହର କମ୍ପି ଉଠିଲା । ଚାରିଆଡ଼େ ଚତୁର୍ଦ୍ଦିଗରେ, ହୁସ୍‌ହାସ, ମଡ଼ମାଡ଼୍, ଦୁମ୍‌ଦାମ୍, ଦି ତା ଶବ୍ଦର ସୀମା ରହିଲା ନାହିଁ । ପ୍ରକାଣ୍ଡ ପ୍ରକାଣ୍ଡ ଅଟ୍ଟାଳିକା ଭାଙ୍ଗି ତଳେ ଶୋଇଗଲା । ସମଗ୍ର ସହରର ଲୋକେ ବ୍ୟାକୁଳ ହୋଇ ପଡ଼ିଲେ । ଗୃହପାଳିତ ପଶୁମାନେ ପାଗଳ ହେଲା ପରି ଦୌଡ଼ିବାରେ ଲାଗିଲେ । ଅନେକ ଘରେ ନିଆଁ ଲାଗିଗଲା । ଅଗ୍ନିନାଦରେ ଆକାଶଦେଶ ବିଦୀର୍ଣ୍ଣ ହେବାରେ ଲାଗିଲା ।

ପ୍ରକୃତିର କ୍ଷଣିକ କୋପରେ ପାଞ୍ଚ ମିନିଟ ମଧ୍ୟରେ ସହସ୍ର ସହସ୍ର ଲୋକ ପ୍ରାଣ ହରାଇଲେ, ଲକ୍ଷ ଲକ୍ଷ ଟଙ୍କା ମୂଲ୍ୟର ସମ୍ପତ୍ତି ନଷ୍ଟ ହେଲା, ବୃଦ୍ଧ ପିତାମାତା ନିଃସନ୍ତାନ ହୋଇଗଲେ, ଶିଶୁ ପିତୃମାତୃ-ହୀନ ହୋଇ ଅନାଥ ହେଲେ । ମରିବା ଲୋକେ ତ ମଲେ; ବାକି ଯେଉଁମାନେ ବଞ୍ଚିଲେ, ପ୍ରତି ମୁହୂର୍ତ୍ତରେ ମୃତ୍ୟୁକୁ ଅପେକ୍ଷା କରି ରହିଲେ । ମୃତ୍ୟୁ ଯନ୍ତ୍ରଣାର ବିକଟ ଚିତ୍କାର ସର୍ବତ୍ର ଶୁଣାଗଲା । ମୁହୂର୍ତ୍ତିକ ମଧ୍ୟରେ ଧନୀ ଦରିଦ୍ର ସମାନ ଦଶା ଭୋଗ କଲେ, ସମସ୍ତେ ଦାଣ୍ଡର ଭିକାରୀ ହୋଇଗଲେ । ସେମାନେ ଜାତି, ଧର୍ମ ବିଚାର ନ କରି ନଦୀକୂଳେ ଗଛମୂଳରେ ଯାଇ ଆଶ୍ରୟ ନେଲେ । ଉତ୍ତର ବିହାରର ପ୍ରବଳ ଶୀତରେ ଶୀତଋତୁର ରାତରେ ସେମାନେ ଯେଉଁ ଯନ୍ତ୍ରଣା ଭୋଗିଥିବେ, ତାହା ସହଜରେ ଅନୁମେୟ ।

ସେ ଦିନ ଦିବସର ଅବଶିଷ୍ଟ ସମୟ ଓ ସାରା ରାତି ଲୋକେ ଜଡ଼ ହୋଇ ପଡ଼ି ରହିଲେ । କ୍ରମେ କାଳରାତି ପାହିଲା । ସକାଳେ ସରକାରୀ କର୍ମଚାରୀ ଓ ସ୍ୱେଚ୍ଛାସେବକମାନେ ଦୁଃସ୍ଥ ଲୋକଙ୍କୁ ସାହାଯ୍ୟ କରିବାକୁ ବାହାରିଲେ । ଅସଂଖ୍ୟ ଶବ ଉଦ୍ଧାର କରାଗଲା । ଭଙ୍ଗା କୋଠାଘରମାନଙ୍କର ଇଟା, ପଥର ତଳୁ ବହୁ ଆହତ ବ୍ୟକ୍ତି



ବାହାରିଲେ । ଟେଲିଗ୍ରାମ ତାର ଛିଣ୍ଡି ଯାଇଥିବାରୁ ବାହାରକୁ ପୂରା ସମ୍ବାଦ ଯାଇପାରିଲା ନାହିଁ । ରେଲମାର୍ଗ ଭାଙ୍ଗି ଯାଇଥିଲା । ସୁତରାଂ ଅନ୍ୟାନ୍ୟ ସ୍ଥାନରୁ ହଠାତ୍ ସାହାଯ୍ୟ ଆସିପାରିଲା ନାହିଁ । ତଥାପି କ୍ରମେ ସହରରେ ବିଭିନ୍ନ ସ୍ଥାନରେ ଅନ୍ନସତ୍ର ଖୋଲାଗଲା, ଅସ୍ଥାୟୀ ଚିକିତ୍ସାଳୟ ବସିଲା ।

କେବଳ ଯେ ମୁଙ୍ଗେର ସହର ଧ୍ୱଂସ ପାଇଲା ତା ନୁହେଁ; ଭାଗଲପୁର, ମୁଜାଫରପୁର, ଦରଭଙ୍ଗା ପ୍ରଭୃତି ସହରମାନ ମଧ୍ୟ

ଅଳ୍ପାଧିକ ପରିମାଣରେ ଦୁର୍ଦ୍ଦଶା ଭୋଗିଲା । ଭୂମିକମ୍ପ ବିହାର ରାଜଧାନୀ ପାଟଣାକୁ ସୁଦ୍ଧା ସ୍ପର୍ଶ କଲା । ତା ଛଡ଼ା ପଲ୍ଲୀଗ୍ରାମମାନଙ୍କରେ ଧ୍ୱଂସଲୀଳା ଲାଗିଗଲା । ମାଟି ଟାଇଲ୍ ନିର୍ମିତ ଘରମାନ ତଳେ ଅଜାଡ଼ି ହୋଇ ପଡ଼ିଲା । ଭୂମି ଫାଟି ବଡ଼ ବଡ଼ ଫାଟମାନ ମୁହଁ ବିସ୍ତାରି ରହିଲା । ନଦୀରୁ ଜଳରାଶି ଉଠି ଗ୍ରାମ ବିଲ୍ କଟିଗୁ ସବୁ ଭସାଇ ନେଲା । ସମୃଦ୍ଧିଶାଳୀ ଉତ୍ତର ବିହାର ସେହି ଗୋଟାଏ ଭୂମିକମ୍ପରେ ବିଧ୍ୱସ୍ତ ହୋଇଗଲା । ବର୍ତ୍ତମାନ ସୁଦ୍ଧା ସେ ସମସ୍ତର କରୁଣଦୃଶ୍ୟ ଲୋକଙ୍କ ଆଖିରେ ଖେଳୁଛି ।

## ପ୍ରଶ୍ନ

୧ । ୧୯୩୪ ମସିହା ଭୂମିକମ୍ପରେ ଓଡ଼ିଶା ଓ ବିହାରର କି କ୍ଷତି ଘଟିଲା ?

୨ । ସେହି ଭୂମିକମ୍ପ ଯୋଗେ ଘଟିଥିବା ମୁଙ୍ଗେର ସହରର ଦୁର୍ଦ୍ଦଶା ବର୍ଣ୍ଣନା କର ।

୩ । ପଲ୍ଲୀଗ୍ରାମମାନଙ୍କରେ କି ବିପତ୍ତି ପଡ଼ିଥିଲା ?

୪ । ଧଡ଼ଧାଡ଼, ଝଣଝଣ, ମଡ଼ମାଡ଼, ଦୁମ୍‌ଦାମ—ଏ ସବୁ ଶବ୍ଦର ଗଠନ କପରି ହୋଇଛି ? ଏପରି ଆଉ ପାଞ୍ଚଗୋଟି ଶବ୍ଦ କହ ।

---

## ରାଜା କପରି ଶିକ୍ଷା ପାଇଲେ

ବହୁକାଳ ପୂର୍ବେ କାଶୀ ରାଜ୍ୟରେ ବ୍ରହ୍ମଦତ୍ତ ନାମକ ଜଣେ ନରପତି ରାଜତ୍ୱ କରୁଥିଲେ । ତାଙ୍କ ରାଜତ୍ୱରେ ରାଜ୍ୟଟି ଘୋରଖୋର ହେବାକୁ ବସିଲା । ଲୋକେ ନ୍ୟାୟ ବିଚାର ପାଇଲେ ନାହିଁ । କେହି ରାଜାଙ୍କ ନିକଟକୁ ଆସି କୌଣସି ଅଭିଯୋଗ କରିବାକୁ ଗଲେ, ସେ ସମସ୍ତ କଥା ଶୁଣିବା ପର୍ଯ୍ୟନ୍ତ ଅପେକ୍ଷା କରୁ ନ ଥିଲେ; ଦୁଇ ଚାରି

ପଦ ଶୁଣିବାମାତ୍ରେ ଗ୍ରସ୍ତ ହୋଇ ହୋଇଥିଲେ । ଫଳରେ ପ୍ରଜାମାନଙ୍କ ମଧ୍ୟରେ ଅସନ୍ତୋଷ ବ୍ୟାପିଗଲା । ଅନେକେ ରାଜ୍ୟ ଛାଡ଼ି ଅନ୍ୟତ୍ର ପଳାଇଗଲେ । ଯେଉଁମାନେ ମାଟି କାମୁଡ଼ି ପଡ଼ି ରହିଲେ, ସେମାନଙ୍କ ଧନ ଜୀବନ ନିରାପଦ ହେଲା ନାହିଁ । କ୍ରମେ ସୁନ୍ଦର ବିଭବଶାଳୀ କାଶୀ ରାଜ୍ୟ ଧ୍ୱଂସ ପାଇବାକୁ ବସିଲା ।

ରାଜାଙ୍କ ମନ୍ତ୍ରୀ ବୋଧିସତ୍ତ୍ୱ ଏଥିରେ ଅତ୍ୟନ୍ତ ବ୍ୟଥିତ ହୋଇ ପଡ଼ିଲେ । ସେ ଯେତେ ସୁପରାମର୍ଶ ଦେଲେ, ରାଜା କାହିଁରେ କର୍ଣ୍ଣପାତ କଲେ ନାହିଁ । ସୁତରାଂ ମନ୍ତ୍ରୀ ପଦରେ ବସି ରହିବା ତାଙ୍କୁ ମହା-ବିଡ଼ମ୍ବନା ବୋଧ ହେଲା । ଅଥଚ ରାଜ୍ୟଟିକୁ ଧ୍ୱଂସ ମୁଖରେ ପଡ଼ିବାର ଦେଖୁଥିବାବେଳେ ସେ ପଦ ଛାଡ଼ି ଚାଲିଯାଇ ପାରିଲେ ନାହିଁ; କୌଣସି ପ୍ରକାରେ ରାଜାଙ୍କୁ ଶିକ୍ଷା ଦେବାର ବାଟ ଖୋଜିବାରେ ଲାଗିଲେ । ପ୍ରଜାବର୍ଗ ମଧ୍ୟ ତାଙ୍କୁ ନିଜ ନିଜର ଦୁଃଖ ଗୁହାରି ଜଣାଇ ବ୍ୟତିବ୍ୟସ୍ତ କରି ପକାଇଲେ ।

ଦିନେ ରାଜା ବୋଧିସତ୍ତ୍ୱଙ୍କ ସହିତ ଉଦ୍ୟାନ ଭ୍ରମଣରେ ଯାଇ ଗୋଟିଏ ଆମ୍ବଗଛ ମୂଳେ ବସିଲେ । ସେହି ଆମ୍ବଗଛଟିରେ ଗୋଟିଏ କୁଆ ବସା ବାନ୍ଧି ରହିଥିଲା । କୁଆ ଆହାର ଅନ୍ୱେଷଣରେ ଯାଇଥିବା ବେଳେ ଦିନେ କୋଇଲି ତା ବସାରେ ଅଣ୍ଡା ଦେଇ ଚାଲିଗଲା । କୁଆ ତାକୁ ନିଜ ଅଣ୍ଡା ମନେକରି ଅତ୍ୟନ୍ତ ଯତ୍ନରେ ରଖିଲା । ଯଥା ସମୟରେ ଅଣ୍ଡା ମଧ୍ୟରୁ ପକ୍ଷୀଶାବକ ବାହାରିଲା । କୁଆ ଥଣ୍ଟରେ ଭଲ ଭଲ ଶିଶୁ ଉପଯୋଗୀ ଖାଦ୍ୟ ଆଣି ତାକୁ ଯୋଗାଇବାରେ ଲାଗିଲା । କୋଇଲି ଛୁଆର ଉଡ଼ିବା ଶକ୍ତି ଜନ୍ମି ନ ଥିଲେ ମଧ୍ୟ, ସେ ସବୁ ଖାଇ ତାହାର କଣ୍ଠ ଫିଟିଗଲା ।

ରାଜା ଆମ୍ବଗଛମୂଳେ ବସି କ୍ଳାନ୍ତ ଦୂର କରୁଥିବା ସମୟରେ ଗୋଟିଏ ମଧୁର କୁହୁସ୍ୱର ତାଙ୍କ କାନରେ ପଡ଼ିଲା । ସେ ଉପରକୁ

ଚାହିଁ କହିଲେ, "ମନ୍ତ୍ରି, ମୋ ରାଜ୍ୟରେ ପକ୍ଷୀମାନେ ତ ଏତେ ଅନାଦରରେ ଅଛନ୍ତି; ରାଜ୍ୟଶାସନ ଭଲ ଚଳୁ ନାହିଁ ବୋଲି ପ୍ରଜାଏ କହନ୍ତି କାହିଁକି ?" ଠିକ୍ ସେତିକିବେଳେ ଉପରୁ ଲଥ୍ କିନା କଣ ଗୋଟାଏ ତାଙ୍କ ପାଦ ନିକଟରେ ପଡ଼ିଲା । ସେ ଚମକି ପଡ଼ି ଚାହିଁ ଦେଖିଲେ ଯେ ଗୋଟିଏ ପକ୍ଷୀଶାବକ ମୃତ୍ୟୁ ଯନ୍ତ୍ରଣାରେ ଛଟଛଟ ହେଉଛି । ସେ ଘଟଣାର ତଥ୍ୟ ବୁଝିବା ନିମନ୍ତେ ରାଜା ମନ୍ତ୍ରୀଙ୍କ ମୁହଁକୁ ଚାହିଁଲେ ।

ବୋଧିସତ୍ତ୍ୱ ବହୁ କାଳ ଧରି ଯେଉଁ ସୁଯୋଗ ଜଗିଥିଲେ, ଆଜି ତାହା ତାଙ୍କୁ ହଠାତ୍ ମିଳିଛି ବୋଲି ବୁଝିପାରିଲେ । ସେ କହିଲେ, "ମହାରାଜ, ଏହାହିଁ ହେଉଛି ଜଗତର ରୀତି । କୋଇଲି ମାନେ ସର୍ବଦା କୁଆ ବସାରେ ଅଣ୍ଡା ଦିଅନ୍ତି । କୁଆ ତାକୁ ନିଜ ଅଣ୍ଡା ମଣି ଯତ୍ନରେ ଉଷୁମାଏ ଓ ତହିଁରୁ ଶାବକ ଜାତ ହେଲେ ଆଦରରେ ଲାଳନପାଳନ କରେ । କୋଇଲି ଶାବକ ଯେତେବେଳେ ସମର୍ଥ ହୁଏ, କୁଆ ବସାରୁ ଉଡ଼ି ଚାଲିଯାଏ ଏବଂ କଣ୍ଠ ସ୍ୱରରେ ସମସ୍ତଙ୍କୁ ମୁଗ୍ଧ କରି ପକାଏ । ସେତେବେଳେ କୁଆ ତାକୁ ପର ବୋଲି ଜାଣିଲେ ସୁଦ୍ଧା, ତାର କୌଣସି ଅନିଷ୍ଟ କରିପାରେ ନାହିଁ । କୋଇଲି ଗଛରୁ ଗଛକୁ ଗାଇ ଗାଇ ଉଡ଼ିବୁଲେ ।"

ରାଜା ଆଉ ଶୁଣିବାକୁ ଅପେକ୍ଷା ନ କରି କହିଲେ, "ଖାଲି ମିଛ କଥା । କାହିଁ, ଆଜି ତ କୋଇଲି ସ୍ୱର ଶୁଭୁ ନାହିଁ ।" ସେ ଆଉ କଣ କହିବାକୁ ଯାଉଥିଲେ, ମନ୍ତ୍ରୀ ତାଙ୍କ କଥାରେ ବାଧା ଦେଇ କହିଲେ, "ଆପଣ ଅଧୀର ହୁଅନ୍ତୁ ନାହିଁ, ଧୈର୍ଯ୍ୟ ଧରି ଶୁଣନ୍ତୁ । କୋଇଲି କୁଆ ତ ଏଇଠି ପ୍ରାଣାନ୍ତକ ହୋଇ ପଡ଼ିଛି, ଆଉ ଗୀତ ଶୁଣାଇବ କିପରି ? ଉଡ଼ିବାକୁ ଡେଣାରେ ବଳ ଆସିବା ପୂର୍ବରୁ ଏ ପାଟି ଫିଟେଇଦେଲା । କୁଆ ସ୍ୱରରୁ ବୁଝିନେଲି ଯେ ଏ

ତାର ସନ୍ତାନ ନୁହେ । ତାହାହିଁ ହେଲା ମୃତ୍ୟୁର ଭୁଲ । ସେଇଥିପାଇଁ ମୃତ୍ୟୁକୁ ମରିବାକୁ ପଡ଼ିଲା, ମଣିମା । କୁଅ ମୃତ୍ୟୁକୁ ବସାରୁ ଝାଡ଼ି ଫିଙ୍ଗିଦେଲା । କି ମନୁଷ୍ୟ, କି ପଶୁ, କି ପକ୍ଷୀ ସମସ୍ତଙ୍କର ପାଟି ଫିଟାଇ କଥା କହିବାର ବେଳ ଅଛି । ସେ ବେଳ ଆସି ପହଞ୍ଚିବା ପୂର୍ବରୁ, ଯେ ଅଧିର ଭାବରେ କଥା କହି ପକାଏ, ତାକୁ ବିପଦରେ ପଡ଼ିବାକୁ ହୁଏ । ସେଥିରେ କାହାର ନିଜର ମୃତ୍ୟୁ ଘଟେ, କାହାର ବା ରାଜ୍ୟ ଛାରଖାର ହୋଇଯାଏ । ଅକାଳରେ ପାଟି ଫିଟାଇବା ଯୋଗେ ଏ କୋଇଲି ଛୁଆର ମୃତ୍ୟୁ ଘଟିଲା, ଦେଖନ୍ତୁ ।”

ରାଜା ସେତକ ଶୁଣି କହିଲେ, “ଅଜ, ସେ ଦୋଷରୁ ମୋ ରାଜ୍ୟ ଛାରଖାର ହୋଇଯାଉଛି ।” ସେଦିନ ସେ ଯଥାର୍ଥ ଶିକ୍ଷା ପାଇଲେ । ତେଣିକି ସେ ଧୈର୍ଯ୍ୟ ଧରି, ସବୁକଥା ପ୍ରଥମେ ଶୁଣି, ତା ପରେ ବୁଝି ବିଚାରି ନିଜ ମତାମତ ପ୍ରକାଶ କରିବାକୁ ଅଭ୍ୟାସ କଲେ । ଫଳରେ କାଶୀ ରାଜ୍ୟ ପୁଣି ସୁଶାସିତ ହେଲା । ପ୍ରଜାପୁଞ୍ଜ ସୁଖ ଶାନ୍ତିରେ କାଳ ଅତିପାତ କରିବାକୁ ସକ୍ଷମ ହେଲେ ।

## ପ୍ରଶ୍ନ

୧ । କାଶୀ ରାଜ୍ୟ କାହିଁକି ଛାରଖାର ହେବାକୁ ବସିଥିଲା ?

୨ । ସେ ରାଜ୍ୟରେ ସୁଖଶାନ୍ତି କିପରି ବିରାଜିଲା ?

୩ । କୁଅ କୋଇଲି ଛୁଆକୁ କାହିଁକି ଫିଙ୍ଗିଦେଲା ?

୪ । ଅନ୍ୱେଷଣ, ଅତିପାତ, ଯଥାର୍ଥ, ପ୍ରାଣାନ୍ତକ, ଯନ୍ତ୍ରଣା, ଗୀତ, ଛଟଛଟ—ଲଗାଇ ବାକ୍ୟ ରଚନା କର ।

୫ । ଉଣ୍ଡୁଥିଲେ, ଅଭିଯୋଗ, ନରପତି, ଉଦ୍ୟାନ, ଭ୍ରମଣ, ଯନ୍ତ୍ରଣା—ଏମାନଙ୍କର ଅର୍ଥ କହ ।

---

# ଭାରତ ଓ ପାକିସ୍ଥାନ

"ଅରେ ମୂର୍ଖ ଦୁଡ଼ା," କୋପେ କହେ ସରୋବର,
"ତୋ ଦୌରାତ୍ମ୍ୟ ହେଉଛି ମୋ ବଞ୍ଚିବା ଦୁଷ୍କର ।
ମୁହିଁ ଜଳ, ଏ ଜଗତେ ସ୍ୱଚ୍ଛ ଦରପଣ,
କୋଟି ପ୍ରାଣୀ ମୁଖ ଯହିଁ କରନ୍ତି ଦର୍ଶନ ।
ତୁ ଅଟୁ କୁତ୍ସିତ ମାଟି; ଲାଗିଲେ ଶରୀରେ,
ଘୃଣାରେ ବିଶ୍ୱଜନେ ଧୁଅନ୍ତି ମୋ ନୀରେ ।
ମୀନ ରହନ୍ତି ସୁଖେ ମୋର, ବୁଲନ୍ତି ସ୍ୱାଧୀନେ;
ତୁ ହେଲୁ ମୋ କଣ୍ଟା, ବାଟ ନ ଛାଡ଼ିଲୁ ଧନେ ।"

ଶୁଣି ଦୁଡ଼ା ଦିଏ ବେଗେ ପ୍ରତ୍ୟୁତ୍ତର ହସି,
"ତୁ ରହିଛୁ, ଯହୁଁ ମୁହିଁ ପାଖେ ଅଛି ବସି ।
ନୋହିଲେ ଅସ୍ତିତ୍ୱ ତୋର ନ ଥାନ୍ତା ଜଗତେ,
ପୁରୁଣା ଗାଡ଼ିଆ ଲୋକେ ବୋଲୁଥାନ୍ତେ ତୋତେ ।
ବାହାର ମଇଳା ନୁକେ ମିଶନ୍ତା ତୋ ଆସି,
ଏ ସ୍ୱଚ୍ଛ ସୌନ୍ଦର୍ଯ୍ୟ କାହୁଁ ପାରନ୍ତୁ ପ୍ରକାଶି ?
ମୁହିଁ ବଞ୍ଚାଇଛି ତୋତେ, ତୋ ଯୋଗେ ମୋ ପ୍ରାଣ;
ଶତ୍ରୁ ମୁଁ ନୁହଇ, ଆମେ ଦୁଇ ବନ୍ଧୁ ଜାଣ ।"

ଅବିକଳ ଏହି ତଥ୍ୟ ପାଇବ ଚକ୍ଷତେ,
ଆମ ଏ ଭାରତବର୍ଷ ଦେଖି ମାନଚତ୍ରେ ।
ପଶ୍ଚିମେ ଦକ୍ଷିଣେ ପୂର୍ବେ ଘେରିଛି ସାଗର,
ବେଳା ଭୂମି ଲହରୀ ତା ପିଟେ ନିରନ୍ତର ।
ଉତ୍ତରେ ହୋଇଛି ଠିଆ ଅଦ୍ରି ହିମାଳୟ
ଯା ଶୃଙ୍ଗେ ରହିଲେ ଚଢ଼େ ଉପୁଜଇ ଭୟ ।

ହିଂସ୍ର ଜନ୍ତୁ ସାଲ୍ ସାଲ୍ ହୁଅନ୍ତି ତା ବନେ,
ଶିରେ ତା ତୁଷାର ତ୍ରାସ ଜନମାଏ ମନେ ।
ଐଶାନ୍ୟ ଓ ବାୟୁ ଦୁଇ କୋଣେ ଅଛି ଶତ୍ରୁ
ପରଦେଶ ପାକିସ୍ଥାନ ଦ୍ୱି ଭାଗେ ବିଭକ୍ତ ।
ଲୁଚି ଦଳେ ଲୁଚି ଦୁଷ୍ଟ ସୀମା ମଧ୍ୟେ ପଡ଼ି,
ଅକାରଣେ ହୁଏ ସିନା ଭାରତ ଝଗଡ଼ା ।

ଏସନ ଯେ ବିଘ୍ନବନ୍ତ ସ୍ଥୂଳବୁଦ୍ଧି ଜନ,
ସୁମରନ୍ତୁ ଗାନ୍ଧୀ ହୁଡ଼ା କଥୋପକଥନ ।
ଜଳଧି ତରଙ୍ଗ ଧକ୍କା ମାରେ ସିନା ତୀରେ,
ଶତ୍ରୁ ପଥ ରୋଧି ରହେ ବିସ୍ତୀର୍ଣ୍ଣ ଶରୀରେ ।
ହିମାଚଳ ରଖେ ବାନ୍ଧି ମୌସୁମୀ ପବନ,
ଭାରତରେ ବରଷାର ସେ ଏକା କାରଣ ।
ରଖିଥାଉ ହିଂସ୍ର ଜନ୍ତୁ ତୁଷାର ଧବଳ,
ଆମେ ବାଛିନେବା ତାର ଯେତେଟିକ ଭଲ ।

ଇଚ୍ଛିଲେ ବିଦେଶୀ ଶତ୍ରୁ ଭାରତେ ପ୍ରବେଶ,
ପାରିହେବ ଅଟେ ସେ ତ ପାକିସ୍ଥାନ ଦେଶ ।
ଭାଇ ଭାବେ ସେ ଦେଶ ତ ଦେଇଛୁ ସନ୍ନିଧି;
କେବେ ଭୁଲେ ଝୁଣ୍ଟିପାରେ, ସହିଯିବା ବିଧି ।
ସ୍ନେହେ ଯାହା ହୁଏ, ସାଧି ନ ପାରେ ତା ଅସି;
ଆମେ ହସି ପୁଚ୍ଛିଲେ, କେ ନ ଭାଷିବ ହସି ?
ରାଜ୍ୟ ରାଜ୍ୟ ମଧ୍ୟେ ଶ୍ରେଷ୍ଠ ସ୍ନେହର ବନ୍ଧନ;
ସ୍ନେହୁଁ ଶାନ୍ତି, ଶାନ୍ତିରୁ ହିଁ ଋଦ୍ଧି ଜନ୍ମସୂନ ।

## ପ୍ରଶ୍ନ

୧ । ପୋଖରୀ ସହିତ ହୁଣ୍ଡାର କଥାବାର୍ତ୍ତା ନିଜ ଭାଷାରେ କହ ।

୨ । ଭାରତର ଚତୁଃସୀମା ବର୍ଣ୍ଣନା କର ଓ ସେଥିମଧ୍ୟରେ ଘଟୁଥିବା ଭଲ ମନ୍ଦ ପରିଣାମ କଣ କହ ।

୩ । ପାକିସ୍ଥାନ ପ୍ରତି ଆମର କପଟ ବ୍ୟବହାର କରିବା ଆମ ପକ୍ଷେ ଭଲ ?

୪ । ନିମ୍ନଲିଖିତ ବାକ୍ୟମାନଙ୍କରେ ଶୂନ୍ୟସ୍ଥାନ ସବୁ ପୂର୍ଣ୍ଣ କର :—

ଜଳଧି ତରଙ୍ଗ ଧକା—ସିନା ତୀରେ
କୋଟି ପ୍ରାଣୀ—ଯହିଁ କରନ୍ତି ଦର୍ଶନ
ହିଂସ୍ର ଜନ୍ତୁ ସାଲ୍ଭ ସାଲ୍—ତା ବନେ
ଦ୍ୱଣା—ବଣ୍ୱଜନେ ଧିଅନ୍ତି ମୋ—

୫ । ଦୁସ୍ତର, ସ୍ଥୂଳବୁଦ୍ଧି, ନିରନ୍ତର, ଦର୍ଶନ, ବିରକ୍ତ, ହିଂଗଣ୍ଡ, ଅକାରଣେ, ସୌନ୍ଦର୍ଯ୍ୟ, ଶୃଙ୍ଗେ, ମାନଚିତ୍ର—ଲଗାଇ ବାକ୍ୟ ରଚନା କର ।

---

## ନିଜ ସ୍ତ୍ରୀକୁ ସ୍ୱାମୀ ଚିହ୍ନିଲେ ନାହିଁ

ପିଲମାନେ, ଅନେକ ବର୍ଷ ତଳର ଗୋଟିଏ ପୁରୁଣା ଗଳ୍ପ ଶୁଣ । ସେ ସମୟରେ ଦିନେ ତୁମର ପରି ଗୋଟିଏ ପିଲା ନିର୍ଜନ ଅରଣ୍ୟ ମଧ୍ୟରେ ଯାଉଥିଲା । ଯାଇ ଯାଇ ସେ ବାଟରେ ଗୋଟାଏ ସିଂହ ଛୁଆ ଦେଖି ତାକୁ ଧରି ପକାଇଲା । ତହୁଁ ଛୁଆର ମା ଗର୍ଜନ କରି ଗଛ ଅନ୍ତୁଆଳରୁ ପିଲାଟି ଅଡ଼କୁ ଧାଇଁ ଆସିଲା । ପିଲା ସେଥିରେ ଡରିବ କଣ, ସେ ଓଲଟି ସିଂହୀଟାକୁ ଅକ୍ରମଣ କରିବାକୁ

ବାହାରିଲା । ସେ ବାଁ ହାତରେ ଛୁଆଟାକୁ ଚାପିଧରି ଡାହାଣ ହାତରେ ମାଆକୁ ଠେଙ୍ଗାରେ ପିଟିବାରେ ଲାଗିଲା ।

ରାଜା ଦୁଷ୍ମନ୍ତ ସେହି ସମୟରେ ସେ ବାଟେ ଶିକାରରେ ଯାଉଥିଲେ । ସେ ଦୃଶ୍ୟ ଦେଖି ସେ ଅଚମ୍ବିତ ହୋଇ ଥକା ମାରି



ଠିଆ ହୋଇଗଲେ । ପ୍ରକୃତରେ ଭାରି ଭୟ ଆଶ୍ଚର୍ଯ୍ୟର କଥା । ସେ ବନ୍ଧୁକରେ ସିଂହୀଟାକୁ ମାରିଦେଇ ପିଲାକୁ ତା ପରିଚୟ ପଚାରିଲେ । ପିଲା ଉତ୍ତର ଦେଲା, "ମୋ ନାମ ଭରତ" ଏବଂ ସେତିକି କହି ସେ ସିଂହଛୁଆଟା ଧରି ଚାଲିଯିବାକୁ ବସିଲା । ତହୁଁ ଦୁଷ୍ମନ୍ତ ତାକୁ ପୁଣି ତା ବାପର ନାମ ପଚାରିଲେ । ପିଲା କହିଲା, "ମୋର ବାପ କିଏ ମୁଁ ଜାଣେ ନା । ସେ ତ ଜଣେ ଅତି ନିଷ୍ଠୁର ଲୋକ । ମା କହନ୍ତି, ସେ କୁଆଡ଼େ ଗୋଟାଏ ରଜା । ରଜା ନା ରାକ୍ଷସ ।"

କଥାଗୁଡ଼ାକ ଦୁଷ୍ମନ୍ତଙ୍କୁ ବିଚିତ୍ର ବୋଧ ହେଲା । ତହୁଁ ସେ ପଚାରିଲେ, "ଅଚ୍ଛା, ବାପା, ତାଙ୍କ ଉପରେ ତୋର ଏଡ଼େ ରାଗ କାହିଁକି ?" ପିଲା ଉତ୍ତର ଦେଲା, "ନିଜ ଭାର୍ଯ୍ୟାକୁ ପର୍ଯ୍ୟ ଚିହ୍ନିଲା ନାହିଁ । ସେ ଲୋକ ରାକ୍ଷସ ନୁହେ ?" ଦୁଷ୍ମନ୍ତ ମୁଣ୍ଡ ପୋତି ଦେଇ ପିଲାର କଥାରେ ହିଁ ଭରିଲେ । ସେ ପିଲାଟି ସଙ୍ଗେ ତା ରହିବା

ସ୍ଥାନକୁ ଯିବାକୁ କହୁଲେ । ପିଲା ତାଙ୍କୁ ବାଟ କଢ଼ାଇ ଗୋଟିଏ ଆଶ୍ରମକୁ ନେଇଗଲା । ଶକୁନ୍ତଳାଙ୍କ ସଙ୍ଗେ ତାଙ୍କର ସେହିଠାରେ ଦେଖା ହେଲା । ଦୁଷ୍ମନ୍ତ ମୃଗୟା ବାହାନାରେ ସେହି ଶକୁନ୍ତଳାଙ୍କୁହିଁ ବନ ପର୍ବତରେ ଖୋଜି ବୁଲୁଥିଲେ ।

ରାଜା ଦୁଷ୍ମନ୍ତ ବନ ମଧ୍ୟରେ ଆଶ୍ରମରେ ରହୁଥିବା ଶକୁନ୍ତଳାଙ୍କୁ କାହିଁକି ଖୋଜୁଥିଲେ, ଶୁଣିବ ? ଥରେ ଗୋଟିଏ ଅତି ଛୋଟିଆ ବାଳିକା ଏକା ନିର୍ଜନ ସ୍ଥାନରେ ପଡ଼ି କୁଆଁ କୁଆଁ କାନ୍ଦୁଥିଲା । ବହୁ ଚିଲ ଶାଗୁଣା ତାକୁ ବେଢ଼ି ରହି ବସିଥିଲେ । କଣ୍ୱମୁନି ସେହି ପିଲାଟିକୁ ଆଶ୍ରମକୁ ନେଇ ପାଳିଲେ ଓ ତାକୁ ଶକୁନ୍ତଳା ନାମ ଦେଲେ । ସେ ବୟସରେ ବଢ଼ି ଆଶ୍ରମ କନ୍ୟା ହୋଇ ସୁଖରେ କାଳ କଟାଇଲା ।

ଥରେ ରାଜା ଦୁଷ୍ମନ୍ତ କଣ୍ୱମୁନିଙ୍କ ଆଶ୍ରମରେ ଆସି ପହଞ୍ଚିଲେ । ସେତେବେଳକୁ କଣ୍ୱ ମୁନି ଆଶ୍ରମରେ ନ ଥିଲେ । ଶକୁନ୍ତଳାଙ୍କ ଲାଗି ଉପଯୁକ୍ତ ବରପାତ୍ର ଖୋଜା ହେଉଥିଲା । ଆଶ୍ରମ ଲୋକେ ଦୁଷ୍ମନ୍ତଙ୍କ ସହିତ ତାଙ୍କର ବିବାହ କରାଇଦେଲେ । ଦୁଷ୍ମନ୍ତ ତ ରାଜ୍ୟ ଛାଡ଼ି ଅରଣ୍ୟ ମଧ୍ୟରେ ଆଶ୍ରମରେ ବେଶୀ ସମୟ ରହିପାରନ୍ତେ ନାହିଁ, ତେଣୁ କିଛିଦିନ ପରେ ସେ ଚାଲିଗଲେ । କିନ୍ତୁ କଣ୍ୱମୁନି ନ ଥିବା ଯୋଗେ ଶକୁନ୍ତଳା ତାଙ୍କ ସଙ୍ଗରେ ଯାଇ ପାରିଲେ ନାହିଁ । ରାଜା ବିଦାୟ ନେଲାବେଳେ ଶକୁନ୍ତଳାଙ୍କୁ ନିଜର ମୁଦିଟି ଦେଇ କହିଲେ, "ଏଇଟି ଆମ ବିବାହର ଚିହ୍ନ । କିଛି ଚିନ୍ତା କର ନାହିଁ, ମୁଁ ଶୀଘ୍ର ତୁମକୁ ଲୋକ ପଠାଇ ନେଇଯିବି ।"

କିନ୍ତୁ ଦୁଷ୍ମନ୍ତଙ୍କ ଲୋକବାକ କେହି ଆସିଲେ ନାହିଁ । ଚାହିଁ ଚାହିଁ ଶକୁନ୍ତଳାଙ୍କ ଆଖିରୁ ପାଣି ମରିଗଲା । ସେ ସ୍ୱାମୀଙ୍କ ଚିନ୍ତାରେ ଆତ୍ମହରା ହୋଇଗଲେ । ଦିନେ ସେ ଏକୁଟିଆ ବସି ଗଭୀର ଭାବରେ

ସେହି ଚିନ୍ତା କରୁଛନ୍ତି, ଏମନ୍ତ ସମୟରେ ଦୁର୍ବାସା ଋଷି ଆସି ଆଶ୍ରମରେ ପହଞ୍ଚିଲେ । ସେ ଶକୁନ୍ତଳାଙ୍କୁ ଡାକିଲେ, ମାତ୍ର ତାଙ୍କ ଡାକ ଶକୁନ୍ତଳାଙ୍କୁ ଶୁଣାଗଲା ନାହିଁ । ଋଷି ବିରକ୍ତ ହୋଇ ଅଭିଶାପ ଦେଲେ, "ତୁ ଯାହା ଚିନ୍ତାରେ ତନ୍ମୟ ହୋଇ ଗୋଟାଏ ପଥର ପରି ବସିଛୁ, ସେ ତୋତେ ପଚାରିବ ନାହିଁ, ଏପରି କି ତୋତେ ଦେଖିଲେ ସୁଦ୍ଧା ଚିହ୍ନିବ ନାହିଁ ।"

ଋଷିଙ୍କ ଶାପରେ ଆଶ୍ରମରେ ହୁଲସ୍ଥୂଲ ପଡ଼ିଗଲା । ଆଶ୍ରମବାସୀ ତାଙ୍କଠାରେ କ୍ଷମା ଭିକ୍ଷା କଲେ । ଋଷି କହିଲେ, "ମୁଁ ଶାପ ଦେଇସାରି ତାକୁ ତ ଆଉ ନିଜେ ଖଣ୍ଡନ କରି ପାରିବି ନାହିଁ । ତେବେ ଏତିକି କହୁଛି, ଶକୁନ୍ତଳା ଦୁଷ୍ମନ୍ତଙ୍କୁ ତାଙ୍କ ମୁଦିଟି ନେଇ ଦେଖାଇଲେ, ସେ ତାକୁ ଚିହ୍ନିବେ ।"

ଏସବୁ ଘଟଣା ପରେ କଣ୍ୱ ଆସି ଆଶ୍ରମରେ ପହଞ୍ଚିଲେ । ଶକୁନ୍ତଳାଙ୍କ ବିବାହ ଖବର ପାଇ ସେ ଖୁସି ହେଲେ । ମାତ୍ର ଦୁଷ୍ମନ୍ତ କାହିଁକି ଶୀଘ୍ର ଲୋକ ପଠାଇ ତାଙ୍କୁ ନେଲେ ନାହିଁ, କଣ୍ୱଙ୍କ ମନକୁ ସେହି ଚିନ୍ତା ଘୁରିଲା । ଦୁଷ୍ମନ୍ତଙ୍କ ଡାକରାକୁ ଅପେକ୍ଷା ନ କରି ସେ ଶକୁନ୍ତଳାଙ୍କୁ ନିଜ ଲୋକଙ୍କ ସଙ୍ଗେ ରାଜାଙ୍କ ନିକଟକୁ ପଠାଇ ଦେଲେ । କିନ୍ତୁ କି ଆଶ୍ଚର୍ଯ୍ୟର କଥା, ଦୁଷ୍ମନ୍ତ ନିଜ ରାଣୀଙ୍କୁ ଚିହ୍ନି ପାରିଲେ ନାହିଁ । ସେ କହିଲେ, "ତୁମର ମୋର ବିବାହ ହୋଇଥିଲା ବୋଲି ଖାଲି ତ ତୁଣ୍ଡରେ କହିଲେ ହେବ ନାହିଁ, ତାର କିଛି ଚିହ୍ନ ଦେଖାଅ ।"

ଶକୁନ୍ତଳା ସଙ୍ଗେ ସଙ୍ଗେ ମୁଦିଟି କାଢ଼ି ଦେଖାଇବାକୁ ବାହାରିଲେ । କିନ୍ତୁ ସେ ଖୋଜି ଖୋଜି ଥକିଗଲେ, ମୁଦି ମିଳିଲା ନାହିଁ । ବାଟରେ ଗାଧୋଇବାବେଳେ ମୁଦିଟି ତାଙ୍କ ଆଙ୍ଗୁଠିରୁ ଖସି ପୋଖରୀରେ ପଡ଼ିଯାଇଥିଲା । ଶକୁନ୍ତଳାଙ୍କର ବୁଦ୍ଧି ହଜିଗଲା ।

ତାଙ୍କ ଚତୁର୍ଦ୍ଦିଗ ଅନ୍ଧାର ଦିଶିଲା । ସେ ଦୁଃଖରେ ଫେରିଆସି କଶ୍ୟପ ମୁନିଙ୍କ ଆଶ୍ରମରେ ରହିଲେ । ସେତେବେଳକୁ ତାଙ୍କର ଗର୍ଭୋଦୟ ହୋଇଥିଲା । ଯଥା ସମୟରେ ତାଙ୍କର ଗୋଟିଏ ପୁଅ ହେଲା ।

ଶକୁନ୍ତଳା ଦୁଷ୍ମନ୍ତଙ୍କ ଉଆସରୁ ଫେରି ଯିବାର କେତେ ଦିନ ପରେ ଜଣେ କେଉଟ ଗୋଟାଏ ମାଛ କାଟିଲା ବେଳକୁ, ତା ପେଟଭିତରୁ ଗୋଟିଏ ମୁଦି ବାହାରିଲା । କେଉଟ ମୁଦିଟି ନେଇ ରାଜାଙ୍କୁ ଉପହାର ଦେଲା । ମୁଦି ଦେଖିବା ମାତ୍ରେ ସବୁ ପୂର୍ବ କଥା ତାଙ୍କ ମନରେ ପଡ଼ିଗଲା । ସେ ଶକୁନ୍ତଳାଙ୍କ କଥା ସ୍ମରଣ କରି ପାଗଳ ପରି ହୋଇଗଲେ । ସେ ତାଙ୍କୁ କେତେଆଡ଼େ ଖୋଜାଇଲେ, ମାତ୍ର ତାଙ୍କର କୌଣସି ସନ୍ଧାନ ପାଇଲେ ନାହିଁ । ତହୁଁ ସେ ଶିକାର ବାହାନାରେ ନିଜେ ଯାଇ ବନ ପର୍ବତରେ ତାଙ୍କୁ ଖୋଜିବାରେ ଲାଗିଲେ । ସେତେବେଳେ ଦିନେ ଭରତଙ୍କ ସଙ୍ଗେ ତାଙ୍କର ଅକସ୍ମାତ୍ ଦେଖା ହେଲା । ଦୁଷ୍ମନ୍ତ ନିଜର ରାଣୀ ଶକୁନ୍ତଳା ଓ ଯୁବରାଜ ଭରତଙ୍କୁ ସଙ୍ଗରେ ଧରି ଉଆସକୁ ଫେରିଲେ ।

## ପ୍ରଶ୍ନ

୧ । ଦୁଷ୍ମନ୍ତ ଶକୁନ୍ତଳାଙ୍କୁ ଚିହ୍ନି ନ ପାରିବାର କାରଣ କଣ ?

୨ । ଶକୁନ୍ତଳା ନିଜେ ପାଠର ବିଷୟ ବର୍ଣ୍ଣନା କଲେ ଯେପରି କହନ୍ତେ, ସେହି ଭାବରେ ବର୍ଣ୍ଣନା କର ।

୩ । ଅକସ୍ମାତ୍, ହଠାତ୍, ଭେଟି, ବୁଦ୍ଧି ହଜିଯିବ, ଚିହ୍ନି ପାରିଲେ, ସୁଦ୍ଧା, ବଚନ, ଅଙ୍ଗୁରୀୟ, ଚିନ୍ତା ବୁଡ଼ିଲା, ପରିଚୟ, ନିଷ୍ଠୁର, ରାକ୍ଷସ, ଓଲଟି, ଆଶ୍ରମ—ଲଗାଇ ବାକ୍ୟ ରଚନା କର ।

## ବ୍ରାହ୍ମଣ ଚଣ୍ଡାଳ ସମାନ

ମଦନପୁରର ହରିଜନ ସାହିରେ ପାଣ, କଣ୍ଡରା ଓ ବାଉରୀ କେତେ ଘର ରହୁଥିଲେ । ସେମାନଙ୍କ ଘରଗୁଡ଼ିକ ଏକେ ଛୋଟ ଛୋଟ କୁଡ଼ିଆ, ସେଗୁଡ଼ିକ ପୁଣି ଭଙ୍ଗାରୁଜା ଅବସ୍ଥାରେ ଥାଏ । ହରିଜନମାନେ ଗ୍ରାମର ଅନ୍ୟ ଲୋକଙ୍କର କାମଧନ୍ଦା କରି କିଛି କିଛି ମଜୁରୀ ପାଆନ୍ତି । ସେଥିରେ ସେମାନଙ୍କର ପେଟ ପୋଷାଯାଏ ନାହିଁ । ସେଥିପାଇଁ ସେମାନେ ନଈ, ନାଳ ଗଡ଼ିଆ ଭିତରୁ ଛୋଟ ଛୋଟ ମାଛ, ଗେଣ୍ଡା, କଙ୍କଡ଼ା ପ୍ରଭୃତି ଧରି ଆଣି ଖାଆନ୍ତି । ଗ୍ରାମର କୂଅରୁ ପାଣି କାଢ଼ି ନେବାକୁ ସେମାନଙ୍କୁ ମନା ଥାଏ । ତେଣୁ ସେମାନେ ଗଡ଼ିଆର ମଇଳା ପାଣି ପିଅନ୍ତି । ଏହିପରି ଭାବରେ ନାନା ଦୁଃଖ କଷ୍ଟ ସହି, ସେମାନେ କୌଣସି ପ୍ରକାରେ ପ୍ରାଣ ଧରି ରହିଥାନ୍ତି ।

କ୍ରମେ ସେମାନେ ଅଧିକ ଅଧିକ ଦୁଃଖ ପାଇଲେ । ସେପରି ଗାଁରେ ବଞ୍ଚିରହିବା ତାଙ୍କୁ ଅସମ୍ଭବ ବୋଧ ହେଲା । ତହୁଁ ପ୍ରତି ଘରୁ ଜଣେ ଲେଖାଏଁ ଉପାର୍ଜନ କରିବା ନିମନ୍ତେ ଆସାମ ଚାଲିଗଲେ । ଆସାମରୁ ଫେରିବା ବେଳକୁ ସମସ୍ତେ ହାତରେ କିଛି କିଛି ପୁଞ୍ଜି ଧରି ଆସିଲେ । ସେହି ପୁଞ୍ଜିରେ କିଏ ଜମିବାଡ଼ି କିଣିଲା, କିଏ ଶଗଡ଼ ବଳଦ କଲା, ଅଉ କିଏ ବା ଗୋଟିଏ ବ୍ୟବସାୟ ଧରିଲା । ସେମାନଙ୍କର ଅଳ୍ପ ଖର୍ଚ୍ଚରେ ଚଳିବା ଅଭ୍ୟାସ ରହିଥିଲା । ଫଳରେ ସମସ୍ତଙ୍କ ପୁଞ୍ଜି ବଢ଼ିବାରେ ଲାଗିଲା ।

ହରିଜନମାନେ ଭଲ ଭଲ ଘର ତୋଳି ରହିଲେ । ନିଜ ସାହିରେ ସେମାନେ କୂଅ ଖୋଳାଇଲେ । ମଦନପୁରରେ ବିଦ୍ୟାଳୟ ନ ଥିଲା, ସେମାନେ ଗୋଟିଏ ନିମ୍ନ ପ୍ରାଥମିକ ବିଦ୍ୟାଳୟ

ବସାଇଲେ । ସେସବୁ ଯୋଗେ ହରିଜନସାହି କ୍ରମେ ହସି ଉଠିଲା । ମଦନପୁରକୁ ସେ ଅଞ୍ଚଳର ଲୋକେ ସେତେ ଖାତିର କରୁ ନ ଥିଲେ । କିନ୍ତୁ ହରିଜନ ସାହି ଯୋଗେ କ୍ରମେ ଚତୁର୍ଦ୍ଦିଗରେ ତାର ଖ୍ୟାତି ବଢ଼ିବାକୁ ଆରମ୍ଭ କଲା ।

ମଦନପୁରରେ ବ୍ରାହ୍ମଣ, କରଣ, ଖଣ୍ଡାୟତ ପ୍ରଭୃତି ଜାତିର ଲୋକେ ବାସ କରୁଥିଲେ । ସେମାନେ ପୂର୍ବେ ହରିଜନମାନଙ୍କୁ ହୀନ ଦୃଷ୍ଟିରେ ଦେଖୁଥିଲେ । ହରିଜନ ସାହିରେ କାହା ଘରେ ନିଆଁ ଲାଗିଗଲେ, ସେହି ହରିଜନମାନେ ସିନା ତାକୁ ଲିଭାନ୍ତି; ଅନ୍ୟ ବାସିନ୍ଦାମାନେ କେବଳ ଗୁହିଁ ରହୁଥାନ୍ତି । ମାତ୍ର ହରିଜନ ସାହିର ଅବସ୍ଥା ବଦଳିଯିବାରେ ସେମାନଙ୍କର ପୂର୍ବ ଭାବ ଆଉ ରହିଲା ନାହିଁ । ହରିଜନସାହି ବିଦ୍ୟାଳୟକୁ ସମସ୍ତ ଗ୍ରାମର ପିଲାମାନେ ପଢ଼ିବାକୁ ଗଲେ । ପିଲାମାନଙ୍କ ମଧ୍ୟରେ ଛୁଆଁ ଅଛୁଆଁ ବାରଣ ରହିଲା ନାହିଁ ।

ଥରେ ଶିକ୍ଷା ବିଭାଗର ଜଣେ ପରିଦର୍ଶକ ମଦନପୁର ବିଦ୍ୟାଳୟ ଦେଖିବାକୁ ଆସିଲେ । ସେ ବିଦ୍ୟାଳୟର କାଗଜପତ୍ରରୁ ଦେଖିଲେ ଯେ ଜଣେ ହରିଜନ ଛାତ୍ର ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିଛି । ତହୁଁ ସେ ସେହି ଛାତ୍ରଟିକୁ ଡକାଇ ତାକୁ ନାନା ପ୍ରଶ୍ନ ପଚାରିଲେ । ପିଲାଟି ପ୍ରତ୍ୟେକ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଦେଇଗଲା । ତାର ନମ୍ର ସ୍ୱଭାବ ଓ ମଧୁର କଥା ଶୁଣି କର୍ମଚାରୀ ଅତିଶୟ ସନ୍ତୁଷ୍ଟ ହେଲେ । ସେ ଅନ୍ୟ ହରିଜନ ଛାତ୍ରମାନଙ୍କୁ ମଧ୍ୟ ପରୀକ୍ଷା କଲେ । ହରିଜନ ଛାତ୍ରମାନେ ସବର୍ଣ୍ଣ ଛାତ୍ରଙ୍କ ତୁଳନାରେ ଯେ ନିକୃଷ୍ଟ ନୁହନ୍ତି, ସେ ଧାରଣା କର୍ମଚାରୀଙ୍କ ମନରେ ଜନ୍ମିଲା ।

କର୍ମକର୍ତ୍ତା ତା ପରେ ହରିଜନ ଛାତ୍ରମାନଙ୍କ ସ୍ୱଭାବ ଚରିତ୍ର ବିଷୟରେ ଶିକ୍ଷକଙ୍କୁ ପଚାରିଲେ । ଶିକ୍ଷକ ତାଙ୍କ ଆଗେ ଗୋଟିଏ ଘଟନା ବର୍ଣ୍ଣନା କଲେ । ସେ କହିଲେ, "ଥରେ ମୋ ଅନୁପସ୍ଥିତିରେ ବିଦ୍ୟାଳୟ ବଗିଚାରୁ ପିଲାମାନେ ପିଜୁଳି ତୋଳି ଖାଇଗଲେ । ଧରାପରା ହୋଇ ପିଜୁଳି ତୋଳିବାରେ ସେମାନେ ଗଛର ଡାଳସବୁ ଭାଙ୍ଗି ଅସ୍ତବ୍ୟସ୍ତ କରିପକାଇଲେ । ମୁଁ ଆସି ତଦନ୍ତ କରି କଥାଟା ବୁଝିବାକୁ ଚେଷ୍ଟାକଲି । କିନ୍ତୁ କେହି ସତ କଥାଟା କହିଲେ ନାହିଁ । କେବଳ ହରିଜନ ପିଲା ଚନ୍ଦ୍ରଶେଖର ଓ ବିଷ୍ଣୁ ଦୋଷ ମାନିଗଲେ ।" ପରିଦର୍ଶକ ସେ ଉଭୟ ପିଲାଙ୍କୁ ଡକାଇ, ସତ୍ୟ କହିଥିବା ଯୋଗେ ତାଙ୍କୁ ସାବାସ କହି ଧନ୍ୟବାଦ ଦେଲେ ।

ପରିଦର୍ଶକ ଆସିଥିବାରୁ ଗ୍ରାମର ଲୋକେ ବିଦ୍ୟାଳୟରେ ରୁଣ୍ଡ ହୋଇଥିଲେ । ସେ ସେମାନଙ୍କୁ କହିଲେ, "ଏ ବିଦ୍ୟାଳୟ ଦେଖି ମୋର ଆନନ୍ଦ ହେଲା । ହରିଜନ ଛାତ୍ରମାନେ ଅନ୍ୟାନ୍ୟ ଛାତ୍ରଙ୍କ ସହିତ କାନ୍ଧକୁ କାନ୍ଧ ଲଗାଇ ଏକତ୍ର ବସି ପଢୁଛନ୍ତି । ଛୁଆଁ ଅଛୁଆଁ ଭେଦ ମନୁଷ୍ୟ ମଧ୍ୟରେ ପ୍ରକୃତରେ ନାହିଁ, ଏ ଜ୍ଞାନ ଆପଣଙ୍କ ପିଲାମାନେ ପାଇଛନ୍ତି । ହରିଜନ ଜାତି ତ ଈଶ୍ୱର ସୃଷ୍ଟି କରି ନ ଥିଲେ, ଆମ ସମାଜରେ ଯେଉଁମାନେ ଦରିଦ୍ର ହୋଇଗଲେ, ସେହିମାନଙ୍କୁ ଅନ୍ୟମାନେ ଘୃଣା କରି ଗୋଟାଏ ଅଲଗ ଜାତିରେ ପରିଣତ କରିପକାଇଲେ । ଆର୍ଥିକ ଅବସ୍ଥା ଖରାପ ହୋଇଗଲେ, ମନୁଷ୍ୟ ସମାଜର ତଳ ସ୍ତରକୁ ଖସିପଡ଼େ । ପୁଣି ଦରିଦ୍ର ଲୋକର ଆର୍ଥିକ ଉନ୍ନତି ଘଟିବା ସଙ୍ଗେ ସେ ଉପରକୁ ଉଠିଯାଏ ।"

ଶ୍ରୋତାମାନେ କହିଲେ, "ଆଜ୍ଞା, ଆପଣ ଯାହା କହୁଛନ୍ତି, ଆମେମାନେ ସ୍ୱଚକ୍ଷୁରେ ତାହା ଦେଖିଛୁ । ଆମରି ଗ୍ରାମର ହରିଜନ-ମାନେ କେଡ଼େ ହୀନ ଅବସ୍ଥାରେ ପଡ଼ିଥିଲେ । ଏବେ ସେମାନେ

ଆମମାନଙ୍କ ସଙ୍ଗେ ଯେ ସମାନ ହୋଇଛନ୍ତି, କେବଳ ସେତିକି ନୁହେଁ; ତାଙ୍କ ମଧ୍ୟରୁ କେତେକ ଆମ ସବର୍ଣ୍ଣ ହିନ୍ଦୁଙ୍କ ଅପେକ୍ଷା ଉଚ୍ଚସ୍ଥାନ ଅଧିକାର କରିଛନ୍ତି । ଅଭାବ ଅସୁବିଧା ବେଳେ ସେମାନେ ଆମକୁ ସାହାଯ୍ୟ କରନ୍ତି । ଆମେମାନେ ମଧ୍ୟ ସେମାନଙ୍କ ଅକସ୍ମାତ୍ ଆପଦ ବିପଦ ପଡ଼ିଲେ, ପରାମର୍ଶ ଦେଉଛୁ । ସେମାନଙ୍କ ସଙ୍ଗେ ଆମେମାନେ ଭାଇ ଭାଇ ପରି ଚଳୁଛୁ । କେବଳ ଯେ ସେମାନେ ଆଜି ଅନ୍ୟେ ଗୃହକୁ ଗୃହ ବାନ୍ଧି ଏକତ୍ର ବାସ କରୁଛୁ, ତା ନୁହେ; ଆମ ଉଭୟଙ୍କ ମଧ୍ୟରେ ସ୍ନେହ ସହାନୁଭୂତି ଯଥେଷ୍ଟ ଅଛି । ଆମେ ଉଭୟେ ଏକ ହୋଇ ଯାଇଛୁ । ଆମ ଗ୍ରାମରେ ବ୍ରାହ୍ମଣ ଚଣ୍ଡାଳ ବର୍ତ୍ତମାନ ସମାନ । ସେଥିଯୋଗେ ଆମେମାନେ ବେଶି ଆନନ୍ଦ ଅନୁଭବ କରୁଛୁ ।”

## ପ୍ରଶ୍ନ

୧ । ପରିଦର୍ଶକ ହରିଜନପିଲା ଦୁହିଙ୍କୁ କାହିଁକି ସାବାସ କହିଲେ ?

୨ । ଗ୍ରାମବାସୀ ବ୍ରାହ୍ମଣ ଚଣ୍ଡାଳ ସମାନ ବୋଲି କହିବାର ମର୍ମ କଣ ?

୩ । ଅନୁଭବ, ପରାମର୍ଶ, ଗୃହକୁ ଗୃହ ବାନ୍ଧି, ସ୍ୱତନ୍ତ୍ରରେ, ଶୋଭା, ପରିଦର୍ଶକ, ଅସ୍ତବ୍ୟସ୍ତ, କାନ୍ଧକୁ କାନ୍ଧ, ସ୍ୱଭାବ, ସନ୍ତୋଷ-ଜନକ, କାରଣ— ଲଗାଇ ବାକ୍ୟ ରଚନା କର ।

---

## ବସ୍ତ୍ର

ଅନ୍ନ ବସ୍ତ୍ର ପାଇବା ମନୁଷ୍ୟ ଜୀବନର ପ୍ରଧାନ ସମସ୍ୟା । କିନ୍ତୁ ବସ୍ତ୍ର, ଅନ୍ନ ପରି ଅପରିହାର୍ଯ୍ୟ ପଦାର୍ଥ ନୁହେ । ମନୁଷ୍ୟ ଏ ପୃଥିବୀରେ ବାସ କରିବା ବହୁ ସହସ୍ର ବର୍ଷ ହେଲାଣି । ତଥାପି

ବର୍ତ୍ତମାନ ସୁଦ୍ଧା ସ୍ଥାନେ ସ୍ଥାନେ ଏପରି ଲୋକ ଅଛନ୍ତି, ଯେଉଁମାନେ କି ବିନା ବସ୍ତ୍ରରେ ଚଳୁଛନ୍ତି । ମନୁଷ୍ୟ ସମାଜ ସେମାନଙ୍କୁ ଅସଭ୍ୟ ଆଖ୍ୟା ଦେଉଛି । ମାତ୍ର ଲଙ୍ଗଳୀ ବାବାଜୀମାନଙ୍କୁ ଅସଭ୍ୟ କହି ହେବ ନାହିଁ । ସେମାନେ ସାଧନା କରି ବସ୍ତ୍ର ଛାଡ଼ନ୍ତି ।

'ବସ୍ତ୍ର' କହିଲେ କାର୍ପାସ ବସ୍ତ୍ର ବୁଝାଏ । ତାହାହିଁ ସର୍ବସାଧାରଣଙ୍କ ପରିଧେୟ । କପାଗଛ ଫଳର ତୁଳାରୁ ସୂତା ପ୍ରସ୍ତୁତ



ହୁଏ ଏବଂ ସେହି ସୂତା ବସ୍ତ୍ର ବୟନରେ ଲାଗେ । ମୋଟା ସୂତାରେ ମୋଟା ବସ୍ତ୍ର ଓ ସୂକ୍ଷ୍ମ ସୂତାରେ ସୂକ୍ଷ୍ମ ବସ୍ତ୍ର ପ୍ରସ୍ତୁତ ହୋଇଥାଏ । ସଚରାଚର ଧନୀ ବ୍ୟକ୍ତିମାନେ ସୂକ୍ଷ୍ମ ବସ୍ତ୍ର ବ୍ୟବହାର କରନ୍ତି; ମୋଟା ବସ୍ତ୍ର ଦରିଦ୍ର ଲୋକଙ୍କ ଭାଗ୍ୟରେ ପଡ଼େ ।

କିନ୍ତୁ ବସ୍ତ୍ରର ବ୍ୟବହାର ପୂର୍ବରୁ ଲୋକେ ଗଛ ଡାଳ, ବଲ୍କଲ ପ୍ରଭୃତି ପିନ୍ଧି ଲଜ୍ଜା ନିବାରଣ କରୁଥିଲେ । ଶୀତ ପ୍ରଧାନ ଦେଶର

ଅଧିବାସୀମାନେ ପଶୁଚର୍ମରେ ଶୀତ ଏଡ଼ୁଥିଲେ । ଗଛ ଡାଳ ବ୍ୟବହାର କରି ଲଜ୍ଜା ନିବାରଣ କରିବା ଲୋକ ବର୍ତ୍ତମାନ ସୁଦ୍ଧା ପୃଥିବୀରେ କେତେକ ସ୍ଥାନରେ ଅଛନ୍ତି ବୋଲି ଶୁଣାଯାଏ ।

ପୂର୍ବ କାଳରେ ଭାରତରେ ପ୍ରଚୁର କାର୍ପାସ ଉତ୍ପନ୍ନ ହେଉଥିଲା । ସେଥିରୁ ତୁଳା ବାହାର କରି ତହିଁରେ ସୂତା ପ୍ରସ୍ତୁତ କରିବା କାର୍ଯ୍ୟ ଘରେ ଘରେ ପ୍ରଚଳିତ ଥିଲା । ସୂତା ଅରଟରେ କଟା ଯାଉଥିଲା ।



ସେହି ସୂତାକୁ ନେଇ ସୂକ୍ଷ୍ମଶିଳ୍ପୀ ତନ୍ତି ନିଜ ଘରେ ତନ୍ତରେ ବସ୍ତ୍ର ପ୍ରସ୍ତୁତ କରୁଥିଲା । ଭାରତର ବସ୍ତ୍ରଶିଳ୍ପୀଗଣ ନିଜ ଶିଳ୍ପରେ ପ୍ରଭୂତ ବିଚକ୍ଷଣତା ଦେଖାଇ ପାରିଥିଲେ । ସେଥିଯୋଗେ ସେମାନଙ୍କ ଖ୍ୟାତି ବିଶେଷ ବଢ଼ିଥିଲା । ଢାକା ବର୍ତ୍ତମାନ ପାକିସ୍ଥାନ ଭାଗରେ ପଡ଼ୁଛି । ପୂର୍ବେ ଢାକାରେ ଏପରି ସୂକ୍ଷ୍ମ ସୂତା ପ୍ରସ୍ତୁତ ହେଉଥିଲା ଯେ ସେଥିରୁ ଷୋଳ ଶହ ଖିଅ ଏକାଠି କଲେ ଇଞ୍ଚିକରୁ ଅଧିକ ମୋଟ ହେଉ ନ ଥିଲା । ଅଶୀ ତୋଳା ଓଜନର ସୂତା ଲମ୍ବାଇଲେ, ତାହାର

ଦୈର୍ଘ୍ୟ ପାଞ୍ଚ ଶହ ମାଇଲ ପର୍ଯ୍ୟନ୍ତ ଯାଉଥିଲା । ସେହି କାରଣରୁ ତାହାର ବସ୍ତ୍ର ପୃଥିବୀର ଅନ୍ୟାନ୍ୟ ଅଞ୍ଚଳରେ ଆଦରରେ ଗୃହୀତ ହେଉଥିଲା । ତାହା ଦିଲ୍ଲୀର ମୋଗଲ ବାଦଶାହମାନଙ୍କର ପ୍ରିୟତମ ପରିଧେୟର ସ୍ଥାନ ଲାଭ କରିଥିଲା ।

ଆମ ଓଡ଼ିଶାରେ ମଧ୍ୟ ପ୍ରଚୁର କାର୍ପାସ ଉତ୍ପନ୍ନ ହୋଇ ବସ୍ତ୍ର-ବୟନ କାର୍ଯ୍ୟରେ ସହାୟତା କରୁଥିଲା । ମାଣିଆବନ୍ଧ, ଗୁଲନଗର ପ୍ରଭୃତି ସ୍ଥାନରେ ସୁନ୍ଦର ଓ ସୂକ୍ଷ୍ମ ବସ୍ତ୍ରମାନ ପ୍ରସ୍ତୁତ ହେଉଥିଲା । ରଣପୁରୀ ଯୋଡ଼ର ନାମ ବର୍ତ୍ତମାନ ସୁଦ୍ଧା ପ୍ରଚଳିତ ଅଛି । କାର୍ପାସ କୃଷି ନିମନ୍ତେ ଓଡ଼ିଶାରେ ଉପଯୁକ୍ତ ଭୂମି ସବୁ ଚତୁର୍ଦ୍ଦିଗରେ ପଡ଼ି ରହିଛି । କିନ୍ତୁ ସେଥିରେ କାର୍ପାସ ହେଉ ନାହିଁ ।

ଭାରତର ବସ୍ତ୍ର ଇତିହାସରେ ଗତ ଶତାବ୍ଦୀର ମଧ୍ୟଭାଗରୁ ଗୋଟାଏ ବିପ୍ଳବ ଘଟିଯାଇଛି । ଇଂରେଜ ରାଜତ୍ୱରେ ବିଲାତରୁ ଏ ଦେଶକୁ ଯନ୍ତ୍ର ନିର୍ମିତ ସୁଲଭ ବସ୍ତ୍ର ଆମଦାନୀ ହୋଇ ଆସିଲା । ପଣ୍ଡିତମାନେ କହନ୍ତି ଯେ ସମଗ୍ର ପୃଥିବୀ ମଧ୍ୟରେ ଭାରତରେହିଁ ପ୍ରଥମେ ବସ୍ତ୍ର ବୟନ ଶିଳ୍ପର ସୃଷ୍ଟି ହୋଇଥିଲା । ସେହି ଭାରତରୁ ବର୍ତ୍ତମାନ ତାର ବିଲୋପ ଘଟିଛି । ସେଥିପାଇଁ ଯନ୍ତ୍ର ପ୍ରସ୍ତୁତ ବିଦେଶୀ ବସ୍ତ୍ରର ଆମଦାନୀ ଦାୟୀ । ଇଂରେଜ ଶାସନରେ ଭାରତକୁ ପ୍ରଧାନତଃ ବିଲାତରୁ ବସ୍ତ୍ର ଆସୁଥିଲା । ପରେ ଜାପାନ ମଧ୍ୟ ତାଠାରୁ ସୁଲଭ ବସ୍ତ୍ର ରପ୍ତାନି କରିବାକୁ ଆରମ୍ଭ କଲା । ସେ ସବୁ ଏତେ ଅଳ୍ପ ମୂଲ୍ୟରେ ମିଳିଲା ଯେ ଲୋକେ ତନ୍ତବୁଣା ଦେଶୀ ଲୁଗା ପିନ୍ଧିବା ପ୍ରାୟ ଛାଡ଼ି ଦେଲେ । କ୍ରମେ ଭାରତରେ ମଧ୍ୟ ବସ୍ତ୍ର କାରଖାନାମାନ ସ୍ଥାପିତ ହେଲା । ବର୍ତ୍ତମାନ ସମଗ୍ର ଭାରତରେ ଶତାଧିକ ବସ୍ତ୍ର କାରଖାନା ଚାଲୁଛି ଏବଂ ସେଥିରେ ବାର୍ଷିକ ଦୁଇ ଶତ କୋଟି ଗଜ ବସ୍ତ୍ର ପ୍ରସ୍ତୁତ ହେଉଅଛି । ସେ ସବୁ ଅହମଦାବାଦ, ବମ୍ବେଇ, ନାଗପୁର, ମଦୁରା

କଲିକତା ପ୍ରଭୃତି ଅଳ୍ପ କେତେ ଗୋଟି ସ୍ଥାନରେ ପୁଞ୍ଜୀଭୂତ ହୋଇ ରହିଛି । ଆମ ଓଡ଼ିଶାରେ ମଧ୍ୟ ଦୁଇ ଗୋଟି ବସ୍ତ୍ର କାରଖାନା ପ୍ରତିଷ୍ଠିତ ହେଲଣି ।



କଳ କାରଖାନା ସାହାଯ୍ୟରେ ବସ୍ତ୍ର ପ୍ରସ୍ତୁତ ହେବା ଫଳରେ ଦେଶର ପ୍ରାଚୀନ ବସ୍ତ୍ରଶିଳ୍ପ ଲୋପ ପାଇଯାଇଛି । ସୁତରାଂ ସେହି ପୁରାତନ ଶିଳ୍ପର ସଂଗଠନ ମଧ୍ୟ ଭାଙ୍ଗିପଡ଼ିଛି । କପାଚାଷୀ, ତୁଳାଭଣା, ତନ୍ତୀ ପ୍ରଭୃତି ବସ୍ତ୍ରଶିଳ୍ପ ସହିତ ସଂପୃକ୍ତ ସହସ୍ର ସହସ୍ର ପରିବାର

ଦରିଦ୍ର ହୋଇ ଯାଇଛନ୍ତି । ସେମାନଙ୍କ ମଧ୍ୟରୁ ଅନେକ ଲୋପ ମଧ୍ୟ ପାଇ ଗଲେଣି । ମହାତ୍ମା ଗାନ୍ଧି ଭାରତରେ ସ୍ୱଦେଶୀ ବସ୍ତ୍ରଶିଳ୍ପର ପୁନରୁଦ୍ଧାର ନିମନ୍ତେ ଅରଟର ପ୍ରଚଳନ ଆରମ୍ଭ କରିଥିଲେ ।

## ପ୍ରଶ୍ନ

୧ । ଭାରତର ପ୍ରାଚୀନ ବସ୍ତ୍ରଶିଳ୍ପ ଯେ ଉନ୍ନତ କରିଥିଲା, ତାର କେତେଗୋଟି ପ୍ରମାଣ ଦର୍ଶାଅ ।

୨ । ଓଡ଼ିଶାରେ ଭଲ ତନ୍ତ ଲୁଗା କେଉଁଠାରେ ମିଳୁଥିଲା ?

୩ । ବର୍ତ୍ତମାନ ଭାରତରେ ବସ୍ତ୍ରଶିଳ୍ପର କେନ୍ଦ୍ର କେଉଁଠାରେ ?

୪ । ତଳେ ଯେଉଁ ଆଠଟି ଶବ୍ଦ ଦିଆଯାଇଛି, ତହିଁରୁ କେଉଁ ଶବ୍ଦଟି କେଉଁ ଶବ୍ଦର ଅର୍ଥ କହ :—ଦଣ୍ଡାୟମାନ, ବଳୟ, ପ୍ରାଚୀନ, ଲୋପ, ଠିଆ, ପୁରାତନ, ପ୍ରସ୍ତୁତ, ଅଦୃଶ୍ୟ ।

୫ । କ୍ଲେଶ, ସମ୍ପୃକ୍ତ, ପୁନରୁଦ୍ଧାର, ଉତ୍ପନ୍ନ, ଖ୍ୟାତ, ସୂକ୍ଷ୍ମ, ପରିଧେୟ, ଅପରିହାର୍ଯ୍ୟ—ଲଗାଇ ବାକ୍ୟ ରଚନା କର ।

---

## ଜର୍ମାନୀ ରାଜ୍ୟର ଗ୍ରାମ

ଜର୍ମାନୀ ରାଜ୍ୟର ଏକ ଗ୍ରାମରେ, ଆମ ଓଡ଼ିଶା ଗ୍ରାମମାନଙ୍କ ପରି, ଲୋକେ କେବଳ ଚାଷ ଉପରେ ନିର୍ଭର ନ କରି, ଚଳୁଥିଲେ । ସେମାନେ ସମସ୍ତେ ମନେ କରୁଥିଲେ ଯେ, ଯେ ଯାହା ହାତରେ ଚଳିବ ପା । ପ୍ରତ୍ୟେକେ ନିଜ ନିଜ ଜମି ଖଣ୍ଡିମାନ ଚାଷ କରି, ତାହାର ଯଥାସମ୍ଭବ ଉତ୍ପାଦନରେ ଚଳୁଥିଲେ । ନିଜର ବାର୍ଷିକ ଖାଦ୍ୟ ଛଡ଼ା ତାହାର ବିଶେଷ କିଛି ଉଦ୍‌ବୃତ୍ତ ବଳୁ ନ ଥିଲା । ବରଂ କେତେକ ପରିବାରରେ ଉତ୍ପାଦନ ବାର୍ଷିକ ବ୍ୟୟକୁ ନିଅଣ୍ଟ ହେଉଥିଲା ।

ଗ୍ରାମଟିର ଅର୍ଥିକ ଅବସ୍ଥା ଯେ ସ୍ୱଚ୍ଛଳ, ତାହା ଭାବିବାର କୌଣସି କାରଣ ନ ଥିଲା ।

ସେତେବେଳେ, ଆମ ଦେଶ ପରି, ସେ ରାଜ୍ୟରେ ଲୋକେ ବିଶେଷ ଅଭାବରେ କାଳ କଟାଉଥିଲେ । ସେଥିରେ ବ୍ୟଥିତ ହୋଇ ରାଜ୍ୟର ସରକାର ତାର ଅର୍ଥିକ ପରିସ୍ଥିତିରେ ଉନ୍ନତି ଘଟାଇବାକୁ ଚେଷ୍ଟା କଲେ । ସେହି ଚେଷ୍ଟା ଫଳରେ ରାଜ୍ୟସାରା ସମବାୟ ସମିତିମାନ ସ୍ଥାପିତ ହେଲା । ପ୍ରତ୍ୟେକ ଗ୍ରାମରେ ଅନ୍ତତଃ ଗୋଟିଏ ଏବଂ ବଡ଼ ବଡ଼ ଗ୍ରାମମାନଙ୍କରେ ଏକାଧିକ ସମିତି ଗଠନ କରାଗଲା ।

ଉଲ୍ଲିଖିତ ଗ୍ରାମରେ ଅଧିକାଂଶ ପରିବାର କୃଷିଜୀବୀ । ସୁତରାଂ ସେଠାରେ ଗୋଟିଏ ସମବାୟ କୃଷି ସମିତି ଗଠିତ ହେଲା । ଗ୍ରାମର ପ୍ରତି ପରିବାରକୁ ସମିତିରେ ଯୋଗଦେଇ ସଦସ୍ୟ ହେବାକୁ ପଡ଼ିଲା । ସେ ଗ୍ରାମର ସମୁଦାୟ କୃଷି ଉପଯୋଗୀ ଜମି ସମିତିର ସମ୍ପତ୍ତିରେ ପରିଣତ ହେଲା । ବିଭିନ୍ନ ମାଲିକଙ୍କ ଜମି ମଧ୍ୟରେ ଯେଉଁ ସବୁ ହିଡ଼ ବନ୍ଧ ଆଦି ଥିଲା, ସେ ସବୁ ଉଠାଇ ଦିଆଗଲା । ଫଳରେ ଜମିର ପରିମାଣ ତ ବଢ଼ିଲା, କଳ ଲଙ୍ଗଳରେ ମାଟି ଚାଷ କରିବା ମଧ୍ୟ ସମ୍ଭବପର ହେଲା । ସେଥିରେ ଏକେ ଚାଷ ଖର୍ଚ୍ଚ କମିଗଲା; ତା ପରେ, ଗଭୀର ଚାଷ ହେବା ଯୋଗେ ମାଟିର ଉର୍ବରତା ବଢ଼ିଲା । ସୁତରାଂ ଜମିର ଉତ୍ପାଦନ ବୃଦ୍ଧି ପାଇଲା ।

ସମବାୟ ସମିତି ଗଠିତ ହେବା ପୂର୍ବେ ପ୍ରତ୍ୟେକ କୃଷକକୁ ନିଜର କ୍ଷୁଦ୍ର ଜମି ଖଣ୍ଡିକୁ ଛୋଟ ଛୋଟ କିଆରିରେ ବିଭକ୍ତ କରିବାକୁ ପଡ଼ୁଥିଲା । କାରଣ, ପରିବାରର ବାର୍ଷିକ ଖାଦ୍ୟ ନିମନ୍ତେ ତାକୁ ଗହମ, ଯବ, ଅଳୁ, ଧୂଆଁପତ୍ର, ଚିନି ପ୍ରସ୍ତୁତ କରିବା ବିଟ, ଗୋରୁଙ୍କ ସକାଶେ ଘାସ ପ୍ରଭୃତି ସବୁ ଉତ୍ପାଦନ କରିବାକୁ ହେଉଥିଲା । ସେପରି କରିବାଦ୍ୱାରା ସବୁ ପଦାର୍ଥର ଫଳନରେ ବାଧା ଘଟୁଥିଲା ।

କିନ୍ତୁ ସମସ୍ତ ଜମି ଏକମାତ୍ର ମାଲିକ ସମିତି ହାତକୁ ଚାଲିଯିବା ଫଳରେ ସେ ଧରଣର କୃଷି ବନ୍ଦ ହୋଇଗଲା । ସମିତି ସମସ୍ତ ଜମିକୁ କେତେଗୁଡ଼ିଏ ବଡ଼ ବଡ଼ ଭାଗରେ ବିଭକ୍ତ କରି, ପ୍ରତ୍ୟେକ ଭାଗରେ ଗୋଟିଏ ଫସଲ ଉତ୍ପନ୍ନ କରିବାର ବ୍ୟବସ୍ଥା କଲେ । ଫସଲ ଅମଳ ହେବା ପରେ, ପ୍ରତ୍ୟେକ ପରିବାର ନିଜ ନିଜ ଜମିର ପରିମାଣ ଅନୁପାତରେ ଫଳ ବାଣ୍ଟି ନେଲେ । ସେଥିରେ ପ୍ରତ୍ୟେକ ପରିବାର ଭାଗରେ ପୂର୍ବ ଅପେକ୍ଷା ବହୁତ ବେଶୀ ଫଳ ପଡ଼ିଲା ।

କିନ୍ତୁ ଜମିର ସମୁଦାୟ ଫଳ ଗ୍ରାମବାସୀ ବାଣ୍ଟି ନେଇଗଲେ ନାହିଁ । ତାଙ୍କୁ ବଣ୍ଟାଯିବା ପୂର୍ବରୁ ତାର ଏକ ଅଂଶ ଗ୍ରାମର କୋଠ ସମ୍ପତ୍ତିରୂପେ ସଞ୍ଚିତ ରଖାଗଲା । ତାହା ସମବାୟ ସମିତି ହସ୍ତରେ ନ୍ୟସ୍ତ ହେଲା । ପୂର୍ବେ ଲୋକମାନେ ବିଶେଷ ଦରକାର ପଡ଼ିଲେ ଜମିବାଡ଼ି ବନ୍ଧକ ଦେଇ ମହାଜନଙ୍କଠାରୁ ଚଢ଼ା ସୁଧରେ ଟଙ୍କା କରଜ ଆଣୁଥିଲେ । ନୂତନ ସଙ୍ଗଠନରେ ସେମାନେ ତାହା ଗ୍ରାମର ସମବାୟ ସମିତିରୁ ପାଇଲେ । ସେଥିରେ ସୁଧର ପରିମାଣ ତ କମ ହେଲା; ତା ଛଡ଼ା, ସେହି ସୁଧ ମଧ୍ୟ ଗ୍ରାମର କୋଠ ସମ୍ପତ୍ତିରେ ପରିଣତ ହେଲା । ମହାଜନଠାରୁ ଋଣ ନେବା ପ୍ରଥା କ୍ରମେ ବନ୍ଦ ହୋଇଗଲା ।

ସମବାୟ ସମିତିର କାର୍ଯ୍ୟ ପାଞ୍ଚବର୍ଷ ଚାଲିବା ପରେ ସେ ବିଷୟରେ ତଦନ୍ତ କରାଗଲା । ସେଥିରେ ପ୍ରକାଶ ପାଇଲା ଯେ ଉକ୍ତ ଗ୍ରାମର ଆର୍ଥିକ ଅବସ୍ଥା ବେଶ୍ ସ୍ୱଚ୍ଛଳ ହୋଇଛି । ଯେଉଁ ସବୁ ପରିବାରର ଫସଲ ବାର୍ଷିକ ବ୍ୟୟକୁ ନିଅଣ୍ଟ ହେଉଥିଲା, ତାଙ୍କର ଆଉ ଅଭାବ ରହିଲା ନାହିଁ । ସମିତି ପାଣ୍ଠିରୁ ଗ୍ରାମର ମୋଟ ଖର୍ଚ୍ଚ ଲାଗି ଲୁଗାପଟା ଓ ଯୋତା ଆଦି ଆବଶ୍ୟକ ପଦାର୍ଥମାନ କିଣାହୋଇ ଆସିଲା ଓ ସାମାନ୍ୟ ଲାଭରେ ଗ୍ରାମବାସୀମାନଙ୍କୁ ବିକ୍ରୟ କରାଗଲା ।

ଅତଏବ ଗ୍ରାମବାସୀଗଣ ସମବାୟ ସମିତି ଯୋଗେ ନାନାଭାବରେ ଉପକୃତ ହେଲେ । ଜର୍ମାନୀ ରାଜ୍ୟର ସ୍ୱରୂପ ବହୁ ପରିମାଣରେ ବଦଳିଗଲା । ଇଉରୋପରେ ତାର ଖ୍ୟାତି ଯାହା ଥିଲା, ତାହା ବଢ଼ିଯିବା ଫଳରେ ସମସ୍ତଙ୍କ ଦୃଷ୍ଟି ତା ଉପରେ ପଡ଼ିଲା । ତାର ଶକ୍ତିସାମର୍ଥ୍ୟ ମଧ୍ୟ ସେ ଅନୁପାତରେ ବୃଦ୍ଧି ପାଇଲା ।

ରାଜ୍ୟ ରାଜ୍ୟ ମଧ୍ୟରେ ପରସ୍ପରଠାରୁ ଶିଖିବାର ବିଷୟମାନ ଅଛି । ଆମ ଦେଶ ନିତାନ୍ତ ଦରିଦ୍ର । ଲୋକଙ୍କ ଭିତରେ ମେଳ ନ ଥିବା ତାର ପ୍ରଧାନ କାରଣ । ଜର୍ମାନୀ ରାଜ୍ୟର ସମବାୟ ନୀତି ଆମ ପକ୍ଷେ ନିତାନ୍ତ ଶିକ୍ଷଣୀୟ । ବର୍ତ୍ତମାନ ଭାରତରେ ଖାଦ୍ୟର ଅଭାବ ପଡ଼ିଛି । ସୁତରାଂ ଭାରତ କୃଷିପ୍ରଧାନ ଦେଶ ହେଲେ ସୁଦ୍ଧା ଆମକୁ ଅନ୍ୟାନ୍ୟ ଦେଶରୁ ଚାଉଳ, ଗହମ ଆଦି କିଣିବାକୁ ହେଉଛି । ସେଥିରେ ଆମର ଅନେକ ଅର୍ଥ ବାହାରକୁ ଚାଲିଯାଉଛି ଏବଂ ଦେଶ କ୍ରମଶଃ ଦରିଦ୍ରତର ହେବାକୁ ବସିଛି । ଦେଶରେ ପ୍ରଚୁର ଖାଦ୍ୟଦ୍ରବ୍ୟ ଉତ୍ପନ୍ନ ହେବା ଦରକାର । ସେଥିପାଇଁ ବ୍ୟକ୍ତିଗତ ଭାବରେ ସମସ୍ତଙ୍କୁ ଅବଶ୍ୟ ଚେଷ୍ଟା କରିବାକୁ ହେବ । କିନ୍ତୁ ସମବାୟ ସୂତ୍ରରେ କୃଷିକାର୍ଯ୍ୟ କରି ପାରିଲେ, ଫଳ ଅଧିକ ଭଲ ହେବ । ଖାଦ୍ୟର ଅଭାବ ଘଟିବ ନାହିଁ, ଦେଶର ଅବସ୍ଥା ସ୍ୱଚ୍ଛଳ ହେବ ଓ ଲୋକେ ସୁଖଶାନ୍ତିରେ ରହି ପାରିବେ । ଜର୍ମାନୀ ରାଜ୍ୟର ଉକ୍ତ ଗ୍ରାମଟି ଆମର ଅନୁକରଣୀୟ ।

### ପ୍ରଶ୍ନ

୧ । ଗ୍ରାମରେ ସମବାୟ ସମିତି ଗଠିତ ହେବା ପୂର୍ବର ଓ ପର ଅବସ୍ଥା ତୁଳନା କରି ଦେଖାଅ ।

୨ । 'ଉକ୍ତ ଗ୍ରାମଟି ଆମର ଅନୁକରଣୀୟ'—ଏ କଥାର ତାତ୍ପର୍ଯ୍ୟ କଣ ?

୩ । ଉକ୍ତ ଗ୍ରାମର କୋଠ ପାଣିଯୋଗେ ଲୋକଙ୍କର କି ଉପକାର ଘଟିଲା ?

୪ । ଅନୁକରଣୀୟ, କୃଷିପ୍ରଧାନ, ପରସ୍ପର, ପରିଣତ, ସମ୍ଭବପର, ତଦନ୍ତ, ନ୍ୟସ୍ତ, ଗଚ୍ଛିତ, ଅନୁପାତ, ଉତ୍ପନ୍ନ, ସ୍ଥାପିତ, ମେଳ, ଉତ୍ପାଦନ—ଲଗାଇ ବାକ୍ୟ ରଚନା କର ।

୫ । ଦରବୃତ୍ତର—ଶବ୍ଦର ତାତ୍ପର୍ଯ୍ୟ କଣ ? ଏପରି ଆଉ ପାଞ୍ଚଗୋଟି ଶବ୍ଦ କହ ।

---

## ଶରତ ସନ୍ଧ୍ୟା

ଏ ଅଟେ ଶରତ ଋତୁ ବର୍ଷ ମଧ୍ୟେ ସାର,
ଆଣଇ ମାନବ ମନେ ଆନନ୍ଦ ଅପାର ।
ବର୍ଷାକାଳ ବିଡ଼ମ୍ବନା ଯାଇଅଛି କଟି,
ହେମନ୍ତ ଆତୁର ନାହିଁ ପ୍ରଭାବ ପ୍ରକଟି ।

ତରୁ ଲତା ଉଭେ ପିନ୍ଧି ସବୁଜ ବସନ,
ନଦୀଜଳ ଦିଶେ ସ୍ୱଚ୍ଛ, ରଜତ ଯେସନ ।
ଧରାପୃଷ୍ଠେ ନୂଆ ପ୍ରାଣ ପଡ଼ଇ ଉଚ୍ଛୁଳି,
ବ୍ୟୋମପଟେ ଶୋଭେ ଶୁଭ୍ର ଧବ ଳବଉଳି ।

ଆସିଅଛି ସନ୍ଧ୍ୟା ଏବେ ଦିନାନ୍ତେ ଭୂତଳେ,
ଧର ତାରା ଅଗଣିତ ଗଗନ ମଣ୍ଡଳେ ।
କିଣାର ସେ ହୋଇମାଳା ଅହା କି ଉଜ୍ଜ୍ୱଳ !
ମିଟି ମିଟି ଗୁହିଁ ଧୀରେ ଶୋଭେ ଥରୁଁ ଥର ।

କେତେ ଦୂରେ ଥିବେ ସବୁ, ମୋତେ ଜଣା ନାହିଁ;
ମୋ ପାଖେ ଅସନ୍ତେ ଯେବେ ଧରନ୍ତ ଲୁଣ୍ଠାଇ ।
ସେ ତ ସବୁ ସରଗର ଜ୍ୱଳଜ୍ୱଳା ପୋକ,
ଆସିଛନ୍ତି ଦେବାପାଇଁ ଅନ୍ଧାରେ ଆଲୋକ ।

ସୁଲୁ ସୁଲୁ ବହେ ଧୀରେ ଶୀତଳ ସମୀର,
କାନେ ଆସି କହେ ଦୂର ଗଛ ପତ୍ର ଗିର ।
ଅର୍ଥ ମୁଁ ନ ବୁଝେ; ତେବେ, ଲଭଇ ଆନନ୍ଦ;
ସ୍ୱର ରହିଯାଏ କାନେ ଭୁଲେ ସିନା ପଦ ।
ଅବୁଝା ପିଲା ମୁଁ ମାଆ କହନ୍ତି କଦାପି;
ଅବୁଝା ଏ ସନ୍ଧ୍ୟା ବାଣୀ ହେବ ମୋର ସାଥି ।
ରଖିବି ମୁଁ ଧରି ତାକୁ ସାରା ରାତି ପାଖେ,
କାଲି କହି ଶୁଣାଇବି ଅବନୀ ଆକାଶେ ।

କାହିଁ କେତେ ଫୁଟିଛନ୍ତି ଫୁଲ ସୁବାସିତ,
ମାଳତୀ ରଜନୀଗନ୍ଧା ହର୍ଷଭରା ଚିତ୍ତ ।
ରାତି ହେଲେ ଅନ୍ଧକାରେ ନ ଦିଶଇ କାନ୍ତି,
ସେ ଲାଗି ସୁଗନ୍ଧ ଫେପି ଦେଉଛନ୍ତି ବାଣ୍ଟି ।
ରାତି ବେଶି ହେଲେ ମୁହିଁ ଶୋଇବି ଅବାସେ,
ଏ ଫୁଲ ବାସନା ବାନ୍ଧ ମୋର ବୁକୁ ପାଶେ ।
ତେବେ ବା ପାଇବି ବାପି ନଜେ ମୁଁ ସ୍ୱପ୍ନରେ,
ଏ ଶରତ ସନ୍ଧ୍ୟା ତାଳେ କ ନାଥି ମୋ ହାତେ ।

## ପ୍ରଶ୍ନ

ପିଲା ତାରାମାନଙ୍କୁ କଣ ବୋଲି କଳ୍ପନା କରୁଛ ?

୨ । ଫୁଲର ଗନ୍ଧ ଓ ପବନର ମର୍ମର ଶବ୍ଦକୁ ପିଲା କଣ କହିବାକୁ ଇଚ୍ଛା କରୁଛି ?

୩ । ଶରତ୍ ଋତୁକୁ ମୋଟାମୋଟି ବର୍ଣ୍ଣନା କର ।

୪ । ମିଟିମିଟି, ଝୁଲ୍‌ଝୁଲ୍—ରେ ଗୋଟିଏ ଶବ୍ଦ ଦୁଇଥର ବ୍ୟବହୃତ ହେବାର କାରଣ କଣ ? ଏହିପରି ଭାବରେ ଗଠିତ- ଅନ୍ତ ପାଞ୍ଚ ଗୋଟି ଶବ୍ଦ କହ ।

୫ । ଅପାର, ବାଡ଼ମ୍ବନା, ପ୍ରଭାବ, ରଜତ, ଉଜ୍ଜ୍ୱଳ, ଧନାନ୍ତେ, ଗିର, ବାଣୀ, ଅବନୀ, ଅକାଶ, ସୁଗନ୍ଧ—ଲଗାଇ ବାକ୍ୟ ରଚନା କର ।

---

ସ ମା ପ୍ତ

ମୁଦ୍ରାକର—ଶ୍ରୀ ଲକ୍ଷ୍ମୀଧର ଗଡ଼ବଡ଼୍, ଶ୍ରୀ ରାଧାରମଣ ପ୍ରେସ, କଟକ—୧୯୫୩